# ସାମାଜିକ ଶିକ୍ଷା

( Social Education )

ପ୍ରଣେତା—

୰ ଶରତ୍‌ଭୂଷଣ ରାୟ, ସାହିତ୍ୟ ଭୂଷଣ

ପ୍ରଥମ ସଂସ୍କରଣ

ପ୍ରକାଶକ—

ଶ୍ରୀ ଅକ୍ଷୟ୍‌କୁମାର ଘୋଷ

ଗଣେଶ ଘାଟ, କଟକ—୨

୧୯୫୯

ମୂଲ୍ୟ—ଏକଟଙ୍କା ପଚ୍ଚିଶ ନୂଆ ପଇସା

# ସୂଚୀପତ୍ର

# ନିବେଦନ

୰ ପରମାରାଧ ଶଶିଭୂଷଣ ରାୟ କବିବର ୰ ରାଧାନାଥଙ୍କ ଜ୍ୟେଷ୍ଠ ଆତ୍ମଜ । ସେ ସମଗ୍ର ଉତ୍କଳର ସାହିତ୍ୟ କ୍ଷେତ୍ରରେ ସୁପରିଚିତ । ସେ ଜୀବନ ବ୍ୟାପୀ ସାହିତ୍ୟାଲୋଚନା କରିଥିବାରୁ ଉତ୍କଳ ସାହିତ୍ୟ ସମାଜ ତାଙ୍କୁ "ସାହିତ୍ୟ ଭୂଷଣ" ଉପାଧିରେ ଭୂଷିତ କରିଥିଲେ । ତାଙ୍କର ଅଜସ୍ର ଲେଖା ମଧ୍ୟରୁ "ଉତ୍କଳ ଋତୁଚିତ୍ର", "ପଲ୍ଲୀ", "ଦାକ୍ଷିଣାତ୍ୟ ଭ୍ରମଣ", "ପ୍ରବନ୍ଧ ପ୍ରବାହ", "ପିତୃସ୍ମୃତି", "କନକା ଦର୍ଶନ", "ଆଠମଲ୍ଲିକର ଅନୁଭୂତି", "ଉତ୍କଳ ପ୍ରକୃତି" ପ୍ରଭୃତି କେତେକଖଣ୍ଡି ମାତ୍ର ପୁସ୍ତକାକାରରେ ପ୍ରକାଶିତ ହୋଇଅଛି । ତଥାପି ତାଙ୍କର ଅନେକ ଗୁଡ଼ିଏ ଲେଖା ଅଦ୍ୟାବଧି ଲୋକ ଚକ୍ଷୁର ଅନ୍ତରାଳରେ ପଡ଼ି ରହିଅଛି ।

୰ ଶଶିଭୂଷଣ ରାୟଙ୍କର ରଚନା କେବଳ ପ୍ରକୃତି ବର୍ଣ୍ଣନାରେ ସୀମାବଦ୍ଧ ନୁହେଁ । ସମାଜର ନାନାବିଧ ସମସ୍ୟା ନେଇ ଚିନ୍ତା ଓ ବିଶ୍ଳେଷଣ କରିବା ତାଙ୍କର ଅନ୍ୟତମ ପ୍ରକୃତି ଥିଲା । ସେ ସାମାଜିକତା ଓ ସହୃଦୟତାର ଏକନିଷ୍ଠ ପୂଜାରୀ ଥିଲେ । ଛାତ୍ର ଛାତ୍ରୀମାନଙ୍କ ମଧ୍ୟରେ ସାମାଜିକତା ଓ ସହୃଦୟତାର ପ୍ରସାର ଓ ପ୍ରତିଷ୍ଠା କଳ୍ପେ ସେ ନିଜ ବ୍ୟୟରେ ଉପଯୁକ୍ତ ପୁସ୍ତକମାନ କିଣି ଛାତ୍ର ଛାତ୍ରୀମାନଙ୍କୁ ସେମାନଙ୍କର ସ୍କୁଲର ଅଧ୍ୟକ୍ଷମାନଙ୍କ ଜରିଆରେ ପୁରସ୍କାର ଦେଇ ସେମାନଙ୍କୁ ଉତ୍ସାହିତ କରୁଥିଲେ ଏବଂ ଏହି ପ୍ରଥାକୁ ଅନେକ ସ୍କୁଲର ବାର୍ଷିକ ପୁରସ୍କାର ବିତରଣ ସମୟରେ ବହୁକାଳ ସେ ଚଳାଇ ଆସିଥିଲେ ।

ଆଜିର ସମାଜ ଏକ ଭଙ୍ଗୁର ସମାଜରେ ପର୍ଯ୍ୟବସିତ ହେବାକୁ ବସିଅଛି । ୰ଶଶିଭୂଷଣ ଅନେକବାର କହୁଥିବାର ଶୁଣାଯାଇଅଛି ଯେ "ଆଜିର ସମାଜ ଅଛି, ସାମାଜିକତା ନାହିଁ, ସହୃଦୟତା ନାହିଁ ।"—ଏ କଥାର ତୀବ୍ର ସତ୍ୟତା ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ଅନୁଭବ କରୁଥିବେ । ୰ଶଶିଭୂଷଣ ଲେଖନୀ ମୁନରେ ବହୁ ନୂତନ ଭାବଧାରା ସୃଜନ କରି ଅଛନ୍ତି । ସେ ଲୋକଚକ୍ଷୁର ଅନ୍ତରାଳରେ ତାଙ୍କ ପ୍ରିୟତମ ବାସ-ଭବନ ଧବଳେଶ୍ୱରସ୍ଥ "ନିଭୃତ ନିଳୟ"ରେ ରହି ନାନା ଦୃଷ୍ଟି କୋଣରୁ ବହୁ ବିଷୟରେ ଅନେକ ଗୁଡ଼ିଏ ରଚନା ଲେଖି ଯାଇଅଛନ୍ତି । ସେଥି ମଧ୍ୟରୁ ବହୁ ଲେଖା ଅଦ୍ୟାବଧି ଅପ୍ରକାଶିତ ରହିଅଛି । ବର୍ତ୍ତମାନ ସେହି ରଚନାବଳୀରୁ କେତେ-ଗୁଡ଼ିଏ ବାଛି "ସାମାଜିକ ଶିକ୍ଷା" ନାମ ଦେଇ ଏହି ପୁସ୍ତକଟି ପ୍ରକାଶ କରାଗଲା ।

ସୁଧୀ ପାଠକ ବର୍ଗ "ସାମାଜିକ ଶିକ୍ଷା" ପୁସ୍ତକଟି ପାଠକରି ଯେ ଉପକୃତ ହେବେ ଏଥିରେ କୌଣସି ସନ୍ଦେହ ନାହିଁ ।

୰ଶଶିଭୂଷଣଙ୍କର ପୁତ୍ର ନ ଥିଲେ । ସେ ତାଙ୍କର ତିନିଗୋଟି କନ୍ୟାଙ୍କୁ ଉପଯୁକ୍ତ ପାତ୍ରସ୍ଥ କରିଯାଇ ଅଛନ୍ତି । ସେମାନେ ସ୍ୱର୍ଗୀୟ ପିତାଙ୍କର ଅପ୍ରକାଶିତ ଅଜସ୍ର ରଚନାବଳୀ କ୍ରମାନ୍ୱୟରେ ପ୍ରକାଶ କରିବା ପାଇଁ ବ୍ରତୀ ହୋଇଅଛନ୍ତି । ସେମାନେ ଏହି କାର୍ଯ୍ୟର ଭାର ମୋର ଉପରେ ନ୍ୟସ୍ତ କରିଥିବାରୁ ଏହି ପୁସ୍ତକଟି ଏହି ସଂକଳ୍ପର ପ୍ରଥମ ଫଳ ସ୍ୱରୂପ ପ୍ରକାଶିତ ହେଲା ।

ଗଣେଶଘାଟ
କଟକ-୨
ତା ୩୦ । ୧ । ୫୯

**ଶ୍ରୀ ଅକ୍ଷୟକୁମାର ଘୋଷ**
ପ୍ରକାଶକ

# ମନୁଷ୍ୟର ସୃଷ୍ଟି

ମନୁଷ୍ୟକୁ ବିଧାତା କି ଅସାଧାରଣ ଶକ୍ତିରେ ବିଭୂଷିତ କରିଅଛନ୍ତି ଏବଂ ମନୁଷ୍ୟ ସେ ଶକ୍ତିର ସଦ୍‌ବ୍ୟବହାର କରି ବିଧାତାଙ୍କର ନାମ ଗୌରବ ରକ୍ଷାରେ କେଉଁ ପରିମାଣରେ ତତ୍ପର ତାହାର ଆଲୋଚନାହିଁ ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରାଚୀନ ଯୁଗର ମନୁଷ୍ୟ ବିଧାତା ରଚିତ ନିସର୍ଗ-ଦତ୍ତ ଦ୍ରବ୍ୟ-ସାମଗ୍ରୀ ଦ୍ୱାରା ନିଜର ଅଭାବ-ବିଳାସର ବାସନା ପରିତୃପ୍ତ କରୁଥିଲା । ସେଥିରେ ଏହି ଅସୁବିଧା ଥିଲା ଯେ ସର୍ବ ସମୟରେ ଏବଂ ସର୍ବ ଦେଶରେ ସର୍ବ ପ୍ରକାର ଦ୍ରବ୍ୟ-ସାମଗ୍ରୀ ମିଳୁ ନ ଥିଲା । କୌଣସି ଦ୍ରବ୍ୟ ଅଳ୍ପ ମିଳୁଥିଲା,—ପ୍ରୟୋଜନ ପକ୍ଷରେ ତାହା ପର୍ଯ୍ୟାପ୍ତ ହେଉ ନ ଥିଲା । ଉପରନ୍ତୁ ନିସର୍ଗ-ଦତ୍ତ ଦ୍ରବ୍ୟସାମଗ୍ରୀରେ ନାନା ତ୍ରୁଟି ଥିଲା । ଶୋଧନ ନ କଲେ ସେ ଗୁଡ଼ିକ ଦ୍ୱାରା ପ୍ରୟୋଜନ ସିଦ୍ଧ ହେଉ ନ ଥିଲା । ଯେଉଁଦିନ ସର୍ବପ୍ରଥମ ବାଷ୍ପ ଶକ୍ତିକୁ ( Steam power ) ଦାସ୍ୟରେ ନିଯୁକ୍ତ କରିବାକୁ ସମର୍ଥ ହେଲା, ଜୀବନ ଧାରାକୁ ସେଦିନ ମନୁଷ୍ୟ ସ୍ୱଚ୍ଛ ସହଜ କରିଥିଲା । ତା' ପରେ ମନୁଷ୍ୟର ସ୍ୱାଚ୍ଛନ୍ଦ୍ୟ ବଢ଼ିଲା, ବୈଦ୍ୟୁତିକ ଶକ୍ତିକୁ ଆୟତ୍ତ କରି; ତା' ପରେ ରାସାୟନିକ ଜ୍ଞାନର ସାହାଯ୍ୟରେ ମନୁଷ୍ୟ ଆଜି ଜୀବନକୁ ସମ୍ପୂର୍ଣ୍ଣ ନୂତନ ଛାଞ୍ଚରେ ଗଢ଼ିଛି ।

ବାଷ୍ପ ଏବଂ ବୈଦ୍ୟୁତିକ ଶକ୍ତି ଆମ୍ଭମାନଙ୍କ ଜୀବନଧାରଣ ପ୍ରଣାଳୀକୁ ନୂତନ ଭାବରେ ଗଢ଼ିଛନ୍ତି । କର୍ମସାଧନା ଓ ଶ୍ରମଶିଳ୍ପ ଆଜି ଗୃହ ଛାଡ଼ି ବିରାଟ ବିପୁଳ କାରଖାନାରେ ଆସି ଆଶ୍ରୟ ନେଇଛନ୍ତି । ଏକମାତ୍ର ପଶୁକୁ ବାହନ କରି ମନୁଷ୍ୟ ସ୍ଥଳପଥରେ ଦୂର ଦୂରାନ୍ତକୁ ଯାତ୍ରା କରୁଥିଲେ, ମାଲପତ୍ର ନେଉଥିଲେ; ବାଷ୍ପ ଏବଂ ବୈଦ୍ୟୁତିକ ଶକ୍ତିର ସାହାଯ୍ୟରେ ଟ୍ରେନ, ମୋଟର ଚଳାଇ ମନୁଷ୍ୟ ଦୂରକୁ ଯେପରି ଏକାନ୍ତ ନିକଟ କରି ପକାଇଛି, ସେହି ପରି ଯାନ-ବାହନ ମାନଙ୍କର ଗତିବେଗ ମଧ୍ୟ ପବନର ଗତିବେଗ ପରି ଦ୍ରୁତ ଓ କ୍ଷିପ୍ର କରିବାକୁ ସମର୍ଥ ହୋଇଅଛି । ଏହି ଶକ୍ତିର ସାହାଯ୍ୟରେ ଆମ୍ଭେମାନେ ଟେଲିଫୋନ ପାଉଅଛୁ, ଟେଲିଗ୍ରାମରେ ନିତ୍ୟ-ନିୟତ କେତେ ସୁଦୂର ଦେଶକୁ ସମ୍ବାଦ ପଠାଉଅଛୁ । ସେଠାର ସଂବାଦ ଗ୍ରହଣ କରୁଛୁଁ । ତା' ପରେ ମନୁଷ୍ୟ ବେତାର-ବାର୍ତ୍ତାର କୌଶଳକୁ ଅୟତ୍ତ କରିଅଛି; ବିମାନ ପୋତ ଚଳାଇ ନଭପଥରେ ଶୂନ୍ୟ ପଥରେ ବୁଲୁଅଛି । ମନୁଷ୍ୟର କାୟିକ ଶ୍ରମର ପରିମାଣ କମିଛି—ଅବସର ମିଳିଛି—ଜୀବନଯାତ୍ରାର ପ୍ରଣାଳୀକୁ ଆଜି କେତେ ସ୍ୱାଚ୍ଛନ୍ଦ୍ୟ ସୁନ୍ଦର କରି ଗଢ଼ିଅଛି ।

ବାଷ୍ପ ଶକ୍ତି ଦ୍ୱାରା ଆମ୍ଭମାନଙ୍କର ଟ୍ରେନ୍ ବୁଲୁଥିଲା; କିନ୍ତୁ ସେ ଶକ୍ତିକୁ ମନୁଷ୍ୟ ଏପରି ଭାବରେ ଆୟତ୍ତ କରି ପାରି ନାହିଁ, ଯାହା ଫଳରେ ଟ୍ରେନର ଗତିବେଗ ବଢ଼ିପାରେ, ବା ସୁନିର୍ଦ୍ଦିଷ୍ଟ ରେଲ୍ ଲାଇନ ଛାଡ଼ି ସାଦାସିଧା ପଥରେ ଘୋଡ଼ାଗାଡ଼ିର ବେଗରେ ପବନ ପରି କ୍ଷିପ୍ରବେଗରେ ଧାବନ କରିବାକୁ ସମର୍ଥ ହୁଏ ।

ଏହି ରେଲ୍, ମଟର, ଟେଲିଫୋନ ଏ ସବୁ ତିଆରି କରିବା ପାଇଁ ମନୁଷ୍ୟ ଯେଉଁ ସବୁ ଉପାଦାନ ବ୍ୟବହାର କରୁଅଛି, ସେ ଉପାଦାନ ନିସର୍ଗ-ଦତ୍ତ । ନିସର୍ଗ ଦତ୍ତ ଏହି ଉପାଦାନ ମାନଙ୍କୁ

ପ୍ରତି ପଦରେ ଅସୁବିଧା ଘଟୁଥିଲା; ସେହି ଅସୁବିଧା ଦୂର କରି ନବ ନବ ଉପାଦାନ ସୃଷ୍ଟିର ସାଧନାରେ ମନୁଷ୍ୟ ଆତ୍ମ ନିବେଦନ କରିଥିଲା ଏବଂ ତାହାର ସେ ସାଧନା ଆଜି ସାର୍ଥକ ହୋଇଛି ।

୧୮୩୪ ଖ୍ରୀଷ୍ଟାବ୍ଦରେ ଜର୍ମାନ-ବୈଜ୍ଞାନିକ ଶୋଏନବାଇନ୍, ନାଇଟ୍ରିକ୍ ଏସିଡ୍ ଓ ସାଲଫିଉରିକ୍ ଏସିଡ୍‌ରେ ତୁଳା ବୁଡ଼ାଇ ରାସାୟନିକ ପ୍ରକ୍ରିୟାରେ 'ଗନ-କଟନ'ର ( Gun-cotton ) ସୃଷ୍ଟି କରିଥିଲେ । ସେ ଗନ୍-କଟନ୍ ସାଂଘାତିକ ବିସ୍ଫୋରକ ! ତା' ପରେ ତୁଳାରେ ନାଇଟ୍ରିକ୍ ଏସିଡ୍‌ର ମାତ୍ରା ଅଳ୍ପ କରି ରାସାୟନିକ ଉପାୟରେ ବୈଜ୍ଞାନିକମାନେ ପାଇରକ୍ସିଲିନ୍ ନାମକ ଧାତୁର ସୃଷ୍ଟି କରିଥିଲେ ।

୧୮୭୦ ଖ୍ରୀଷ୍ଟାବ୍ଦରେ ହାୟାଟ୍ ନାମକ ମାର୍କିନ ବୈଜ୍ଞାନିକ ରାସାୟନିକ ପ୍ରଣାଳୀରେ ପାଇରକ୍ସିଲିନ ସହିତ କର୍ପୂର ମିଶାଇ ସେଲୁଲଏଡ୍‌ର ସୃଷ୍ଟି କରିଥିଲେ । ଏହି ସେଲୁଲଏଡ୍ ଆଜି ମନୁଷ୍ୟର କେତେ ପ୍ରୟୋଜନ ସିଦ୍ଧ କରୁଅଛି, ତାହାର ସୀମା ପରିସୀମା ନାହିଁ । ସେଲୁଲଏଡ ବିଷୟରେ ବୈଜ୍ଞାନିକ ମାନଙ୍କର ଗବେଷଣା ବର୍ତ୍ତମାନ ସୁଦ୍ଧା ଶେଷ ହୋଇ ନାହିଁ । ଏବଂ ଏହି ଗବେଷଣା ଫଳରେ ଫରାସୀ ରାସାୟନିକ ଶାରଦନେଂ ସେଲୁଲଏଡ୍‌ର ସୂକ୍ଷ୍ମ ତନ୍ତୁରାଜି ସୃଷ୍ଟି କରି ତାହାକୁ ଅଦାହ୍ୟ କରି ସେହି ତନ୍ତୁରାଜି ଦ୍ୱାରା 'ରେୟନ' ନାମରେ ନକଲି ରେଶମ ଲୁଗା ତୟାରି କରିଅଛନ୍ତି ।

ଏହି ସେଲୁଲଏଡ୍, ପାଇରକ୍ସିଲିନ ଓ ରେୟନକୁ ଆଦି ଉପାଦାନ ସ୍ୱରୂପ ଗ୍ରହଣ କରି ସେଥିରୁ ନବନବ ବହୁ ଧାତୁ-ଉପାଦାନର ସୃଷ୍ଟି ହେଉଅଛି ।

ସେଥିପାଇଁ କେବଳ ରେୟନ୍ ରଚନା କରି କ୍ଷାନ୍ତ ହୋଇ ନାହିଁ । ରସାୟନିକ ପ୍ରଣାଳୀରେ ଏପରି ଲୁଗା ତିଆରି ହେଉଅଛି ଯେ ସେ ଲୁଗାରେ ଦାଗ ଲାଗେ ନାହିଁ, ପାଣି ଲାଗିଲେ ମଧ୍ୟ ସେ ଲୁଗା ଓଦା ହୁଏ ନାହିଁ । ଏହିପରି ଲୁଗାରେ ଆଜି ଫ୍ରକ, ବ୍ଲାଉସ, ସାର୍ଟ, ହ୍ୟାଟ, ମୋଜା ପ୍ରଭୃତି ନିର୍ମିତ ହେଉଅଛି । ଏହି ଲୁଗାରେ ଆଜି ବର୍ଷାତି ତମ୍ବୁର ଆଚ୍ଛାଦନୀ-ପଟି ପର୍ଯ୍ୟନ୍ତ ତିଆରି ହେଉଅଛି ।

ନିତ୍ୟ-ଦିନ ଆମ୍ଭେମାନେ ଯେଉଁ ସମସ୍ତ ଜାମା-ଲୁଗା ବ୍ୟବହାର କରୁଁ, କଲପ ଦ୍ୱାରା ସେ ଗୁଡ଼ିକୁ ମସୃଣ ଓ ଚିକ୍‌କଣ ରଖିବାକୁ ହୁଏ । ରସାୟନିକ ପ୍ରଣାଳୀରେ ମନୁଷ୍ୟ ଆଜି ଏପରି କଲପ ତିଆରି କରିଛି ଯେ ଏହି ସବୁ ନକଲି ଲୁଗାରେ ଥରେ ମାତ୍ର ସେ କଲପ ଲଗିଲେ ଦୀର୍ଘକାଳ ତାହା ଅଟୁଟ ଥାଏ ।

ଏତେ-କାଳ ଜୋତା ପଶୁ-ଚର୍ମରେ ତିଆରି ହେଉଥିଲା । ଆଜି ରସାୟନିକଙ୍କ କଲ୍ୟାଣରୁ ନକଲି ଚମଡ଼ା ତିଆରି ହେଉଛି । ନକଲି ଚମଡ଼ା-ନିର୍ମିତ ଜୋତାର ଦାମ ଶସ୍ତା,—ଅଥଚ ଅସଲି ଚମଡ଼ା ଜୋତା ପରି ମଜବୁତ । ରସାୟନିକ ଆଜି ଅଜସ୍ର ନକଲି ଉପାଦାନ ତିଆରି କରୁଅଛନ୍ତି ଏବଂ ସେ ସବୁ ଉପାଦାନ ସୁଲଭ ବୋଲି ଗରିବ ଗୃହସ୍ଥଙ୍କ ପକ୍ଷରେ ମଧ୍ୟ ଆଜି ବହୁ ସାମଗ୍ରୀ ଆଉ ଦୁରାଶାର ସ୍ୱପ୍ନମାତ୍ରରେ ପର୍ଯ୍ୟବସିତ ନୁହେଁ । ସେମାନେ ମଧ୍ୟ ବହୁ ସାମଗ୍ରୀ କିଣି ଅଭାବ ଓ ବିଳାସ ବାସନା ପରିପୂରଣରେ ସମର୍ଥ ହୋଇଅଛନ୍ତି ।

ଚମଡ଼ା, ରବର ପ୍ରଭୃତି କଞ୍ଚା ମାଲର ଦାମ କେତେବେଳେ ବଢ଼େ କେତେବେଳେ କମେ । କଞ୍ଚା ମାଲରୁ ଯେଉଁ ସବୁ ପ୍ରୟୋଜନୀୟ ଜିନିଷପତ୍ର ତିଆରି ହୁଏ, କଞ୍ଚା ମାଲର ଦାମ ବଢ଼ିଲେ, ସଙ୍ଗେ ସଙ୍ଗେ ସେହି ସବୁ ଜିନିଷପତ୍ରର ଦାମ ବଢ଼ି

ଅନେକଙ୍କ ପକ୍ଷରେ ତାହା ଦୁର୍ଲଭ ହୋଇ ଉଠେ । ଆଜି ରସାୟନିକ ପ୍ରଣାଳୀରେ ପ୍ରସ୍ତୁତ ନକଲ ମାଲର ଦାମ ବଢ଼ିବାର କୌଣସି ଆଶଙ୍କା ନାହିଁ ବୋଲି ସମସ୍ତେ ଏହି ସବୁ ଜିନଷ କିଣିବାକୁ କୌଣସି ଅସୁବିଧା ବୋଧ କରୁ ନାହାନ୍ତି । ତା' ଉପରେ ସବୁଆଡ଼ ଦେଇ ଅସଲ ଅପେକ୍ଷା ନକଲ ମାଲ ସରସ ହେଉଛି, ମଜବୁତ ହେଉଛି ।

ଅସଲ ରବରରେ ବହୁ ତ୍ରୁଟି ଅଛି । ରବରକୁ ରସାୟନିକ ଆଜି ନିର୍ଖୁତ ଏବଂ ସର୍ବ କାର୍ଯ୍ୟରେ ବ୍ୟବହାରୋପଯୋଗୀ କରି ଗଢ଼ିଛନ୍ତି । ଯେଉଁ ରବରକୁ ପାଞ୍ଚ ବର୍ଷ ପୂର୍ବରେ ଯଥେଚ୍ଛା ଭାବରେ ବ୍ୟବହାର କରି ହେଉ ନ ଥିଲା, ଆଜି ସେହି ରବର ରସାୟନିକଙ୍କ ହାତରେ ଏପରି ବଶ୍ୟତା ସ୍ୱୀକାର କରିଛି ଯେ ତାହା ଦ୍ୱାରା ଯେପରି ଖୁସୀ ଯେ ଭାବରେ ଖୁସୀ ଯେ କୌଣସି ସାମଗ୍ରୀ ତିଆରି ହୋଇପାରେ ।

ପାଣି, ପବନ, କୋଇଲା, ଲୁଣ, ଚୂନ—ଏହି ସବୁ ସାମଗ୍ରୀରୁ ରସାୟନିକ ପ୍ରଣାଳୀରେ ମାନବର ପୁଷ୍ଟିକର ଖାଦ୍ୟ-ପାନୀୟ ଆଜି ତିଆରି ହେଉଛି; ମନୁଷ୍ୟର ଜୀବନ ସେ ସବୁ ଖାଦ୍ୟ ପାନୀୟ ଗ୍ରହଣ କରି ସୁସ୍ଥ ସ୍ୱଚ୍ଛନ୍ଦ ରହିବ ।

୧୯୧୦ ଖ୍ରୀଷ୍ଟାବ୍ଦରେ ରେୟନ ଲୁଗାର ପ୍ରଥମ ସୃଷ୍ଟି । ସିଲ୍‌କର ଖରାପ ନକଲ ବୋଲି ଅନେକ ଲୋକେ ସେତେବେଳେ ସୁ ନଜରରେ ଦେଖୁ ନଥିଲେ; ସେଥିଲାଗି ରେୟନର ଉତ୍କର୍ଷ ସାଧନ ନିମନ୍ତେ ରସାୟନିକ ମାନଙ୍କର ଗବେଷଣାର ଅନ୍ତ ନ ଥିଲା । ଏବଂ ଏହି ଗବେଷଣାର ଫଳରେ ୧୯୧୫ ଖ୍ରୀଷ୍ଟାବ୍ଦରେ ରେୟନର ପ୍ରଭୂତ ଉତ୍କର୍ଷ ସାଧିତ ହୋଇଥିଲା । ଏବଂ ୧୯୩୦ ଖ୍ରୀଷ୍ଟାବ୍ଦରେ ପୃଥିବୀର

ସର୍ବସ୍ ରେୟନର ଆଦର ଏତେ ବଢ଼ି ଉଠିଲା ଯେ ଅସଲ୍ ସିଲ୍କ ଅପେକ୍ଷା ରେୟନ୍‌ର ବିକ୍ରୟ ଚତୁର୍ଗୁଣ ବୃଦ୍ଧି ପାଇଲା ।

ଆଜି ଯେଉଁ ରେୟନ ତିଆରି ହେଉଅଛି, ତାହା ବୈଜ୍ଞାନିକ ମାପ କଷି । ଏ ମାପ ନିର୍ଭୁଲ, ଇଚ୍ଛାନୁଯାୟୀ ରେୟନକୁ ସୂକ୍ଷ୍ମ ବା ମୋଟା କରି ତିଆରି କରାଯାଇ ପାରେ । ନକଲ୍ ଚମଡ଼ା ବା ନକଲ୍ କାଠର ମଧ୍ୟ ଏହି ବ୍ୟବସ୍ଥା ।

ନିଉ-ଇୟର୍କ ଧନୀର ଦେଶ, ବିଳାସୀର ଦେଶ । ଦୁଇ ବର୍ଷ ପୂର୍ବରେ ସେଠାର ସୌଖୀନ ଧନାଢ୍ୟ ସମାଜ-ବିଳାସିନୀ ମାନଙ୍କ ପୋଷାକ ପରିଚ୍ଛଦର ହିସାବ ନେଇ ଦେଖା ଯାଇଛି, ଶତକଡ଼ା ୯୦ ଜଣ ବିଳାସିନୀ ଅସଲ୍ ସିଲ୍‌କର ମାୟା ତ୍ୟାଗ କରି ନକଲ୍ ରେୟନ୍-ସିଲ୍‌କରେ ବିଳାସ ବାସନା ଚରିତାର୍ଥ କରି ଧନ୍ୟ ହେଉଅଛନ୍ତି ।

୧୯୩୬ ଖ୍ରୀଷ୍ଟାବ୍ଦରୁ କୋଇଲାରୁ ତେଲ ତିଆରି କରିବା ପାଇଁ ରସାୟନିକ ମାନଙ୍କର ସାଧନା ଆରମ୍ଭ ହୋଇଥିଲା । ଜର୍ମାନ୍ ରସାୟନିକ ବାର୍ଜ୍ୟୁସ ଏ ସାଧନାରେ ସିଦ୍ଧିଲାଭ କରି ଜଗତକୁ ଚମତ୍କୃତ କରିଥିଲେ । ତାଙ୍କର ସେ ସାଧନା ଫଳରେ ଜର୍ମାନୀରେ ଆଜି ବର୍ଷକୁ ତିନି ଲକ୍ଷ ଟନ୍ ପରିମିତ କୋଇଲାରୁ ତେଲ ତିଆରି ହେଉଛି । ଅସଲ ପେଟ୍ରୋଲ୍ ବା ଗ୍ୟାଶୋଲିନ-ନିଷ୍କାସନରେ ଯେଉଁ ବ୍ୟୟ ହୁଏ, କୋଇଲାରୁ ନକଲ ପେଟ୍ରୋଲ୍ ତିଆରି କରିବାକୁ ବ୍ୟୟ ଅବଶ୍ୟ ତିନି ଗୁଣ ଗୁଣ ବଢ଼ିଛି, ତଥାପି ଖର୍ଚ୍ଚ ବେଶୀ ହେଲେ ମଧ୍ୟ ଜର୍ମାନୀକୁ ପେଟ୍ରୋଲ ନିମନ୍ତେ ଆଜି ପରମୁଖାପେକ୍ଷୀ ହେବାକୁ ହୁଏ ନାହିଁ । ଇଂଲଣ୍ଡରେ ବର୍ତ୍ତମାନ କୋଇଲାରୁ ନକଲ ପେଟ୍ରୋଲିୟମ୍ ତିଆରି କରିବାର ବ୍ୟବସ୍ଥା ହୋଇଛି, ଆମେରିକାରେ

ମଧ୍ୟ ସମ୍ପ୍ରତି କୋଇଲାରୁ ତରଳ ପେଟ୍ରୋଲିୟମ୍ ନିଷ୍କାସିତ ହେଉଅଛି ।

ବାର୍ଜିୟସ ଆଜି ଗୋଟିଏ ଅସାଧ୍ୟ ସାଧନ କରିଅଛନ୍ତି । କାଠ ପୋଡ଼ି ସେହି କାଠକୁ କୋଇଲାରେ ରୂପାନ୍ତରିତ କରି ସେହି ରୂପାନ୍ତରିତ କୋଇଲାରୁ ତୈଳ-ନିଷ୍କାସନର ବ୍ୟବସ୍ଥା କରିଅଛନ୍ତି ।

ପେଟ୍ରୋଲ୍ ଆଜି ଆମ୍ଭମାନଙ୍କର ନିତ୍ୟ-ପ୍ରୟୋଜନୀୟ ସାମଗ୍ରୀ । ରସାୟନର କଲ୍ୟାଣରୁ ପେଟ୍ରୋଲ୍ ପରି ଆଜି ନବ ନବ କେତେ ଧାତୁର ସୃଷ୍ଟି ହୋଇଛି, ଭାବିଲେ ମନୁଷ୍ୟର ସୃଷ୍ଟି-କୁଶଳତାର କଥା ସ୍ମରଣ କରି ବିସ୍ମୟର ସୀମା ନ ଥାଏ ।

ଟାଇଟାନିୟମ୍, ମଲିବ୍‌ଡେନାମ୍, ଟାଙ୍ଗଷ୍ଟେନ, ପ୍ଲାଟିନାମ୍, କ୍ୟାଡ଼ମିୟମ ପ୍ରଭୃତି ଧାତୁ ଆବିଷ୍କୃତ ହେଲେ ମଧ୍ୟ ତାହା ଏତେ ଦୁର୍ଲଭ ଯେ ତା'ର ଦାମ ସୁନା-ମାଣିକ ଅପେକ୍ଷା ଅନେକ ବେଶୀ । ଆଧୁନିକ ବିଜ୍ଞାନ ବହୁ ସାଧନାରେ ଏପରି ବହୁ ନକଲି ଧାତୁର ସୃଷ୍ଟି କରିଛି ଯେ, ସେ ସବୁ ନବ-ନିର୍ମିତ ଧାତୁର କଲ୍ୟାଣରେ ଦୁର୍ମୂଲ୍ୟ ଧାତୁର ଅଭାବ ଆମ୍ଭମାନଙ୍କୁ ଉପଲବ୍ଧି କରିବାକୁ ପଡ଼େ ନାହିଁ ।

ତା'ପରେ ନୂତନ ଯେଉଁ ସବୁ 'ପ୍ଲାଷ୍ଟିକ' ବା ନକଲି ଧାତୁ-ଉପାଦାନ ତିଆରି ହେଉଅଛି, ସେଥିରେ ଆମ୍ଭମାନଙ୍କର ସର୍ବ ପ୍ରକାର ଅଭାବ ଦୂର ହେଉଛି । ଷ୍ଟ୍ରେପଟୋକକାଇ-ବୀଜାଣୁର ପ୍ରଭାବରେ କଠିନ ବ୍ୟାଧିଗ୍ରସ୍ତ ହୋଇ ଜୀବର ଜୀବନ-ନାଶ ହୁଏ; ନବ ରସାୟନ ସାହାଯ୍ୟରେ ମନୁଷ୍ୟ ଆଜି ଏହି ଷ୍ଟ୍ରେପଟୋକକାଇ-ବିଷ ସମ୍ପୂର୍ଣ୍ଣଭାବରେ ବିନଷ୍ଟ କରି ଜୀବର ଜୀବନ ରକ୍ଷାର ଅମୋଘ ଉପାୟ ବିଧାନ କରୁଅଛି । ବିଷାକ୍ତ କ୍ଷତ, ଏରିସିପେଲସ୍, ପେରିଟୋନାଇଟିସ୍ ପ୍ରଭୃତି ରୋଗ ବୈଜ୍ଞାନିକଙ୍କ ସାଧନାରେ ଆଜି

ଅଜ ଘାଘାତକ ହୋଇ ପାରୁ ନାହିଁ—ଏ ସବୁ ରୋଗ ଅଜ ନିର୍ଦ୍ଦୋଷଭାବରେ ଅରୋଗ୍ୟ ହେଉଅଛୁ ।

ତା'ପରେ ପୁଷ୍ଟିକର ଖାଦ୍ୟ । ଭିଟାମିନ ହିଁ ଅମ୍ଭମାନଙ୍କ ଦେହର ପୁଷ୍ଟିସାଧନ କରେ ଏବଂ ଅପଚୟ ପରିପୂରଣ କରେ । ରସାୟନିକ ଅଜ ବିଜ୍ଞାନ ବଳରେ ଭିଟାମିନ-ଯୁକ୍ତ ଖାଦ୍ୟସାର ତିଆରି କରୁଅଛନ୍ତି । ଏ ଖାଦ୍ୟ ଗ୍ରହଣରେ ଦେହର ଅପଚୟ ରୋଧ ଏବଂ ପୁଷ୍ଟି ସାଧନ ଅଜ ସୁନିଶ୍ଚିତ ହୋଇଅଛୁ ।

କୃଷିର ଶତ୍ରୁ ଦୁଷ୍ଟ କୀଟକୁ ରସାୟନିକ ଅଜ ନିର୍ମୂଳ କରିଛନ୍ତି । ପୂର୍ବେ ଦୁଷ୍ଟ କୀଟର ଅତ୍ୟାଚାରରେ ଅମେରିକାର କ୍ଷେତର ଫସଲ ଯେଉଁ ପରିମାଣ ନଷ୍ଟ ହେଉଥିଲା, ହିସାବ କଲେ ତା'ର ମୂଲ୍ୟ ପ୍ରାୟ ଦୁଇହଜାର ଲକ୍ଷ ଡଲାର ହୁଏ । ତା' ଉପରେ ଫସଲରେ ନାନା ବ୍ୟାଧି ଘଟୁଥିଲା—ସେ ବ୍ୟାଧିପାଇଁ ପ୍ରାୟ ପନ୍ଦରଶହ ଲକ୍ଷ ଡଲାର ଦାମର ଫସଲ ନଷ୍ଟ ହେଉଥିଲା । ବର୍ତ୍ତମାନ ରସାୟନିକ ପ୍ରତିକାର ଓ ପ୍ରତିଷେଧକର ଗୁଣରେ ଏ ଅପଚୟର ମାତ୍ରା ପ୍ରାୟ ଶତକଡ଼ା ୯୦ ଭାଗ କମି ଯାଇଛୁ ।

ପୂର୍ବରେ ଯେଉଁ ପ୍ଲାଷ୍ଟିକ କଥା କହିଛୁ, ସେହି ପ୍ଲାଷ୍ଟିକ ଦ୍ୱାରା ବାସନ, ଟେଲିଫୋନ, ବ୍ରାସ, ସାବୁନ ବାକ୍ସ, ଆର୍ସି ଫ୍ରେମ ତିଆରି ହେଉଛୁ ।

ବିଜ୍ଞାନ ବଳରେ ମନୁଷ୍ୟ ଅଜ ସୃଷ୍ଟିରେ ଯେଉଁ ଯୁଗାନ୍ତର ଅଣିଛୁ, ତାହା ଫଳରେ ମନୁଷ୍ୟର ଜୀବନଯାତ୍ରା ଅନେକ ପରିମାଣରେ ସ୍ୱଚ୍ଛନ୍ଦ, ନିରାମୟ, ନିର୍ବିଘ୍ନ ହୋଇଉଠିଛୁ । ଅଲକ୍ଷ୍ୟରେ ବସି ବିଧାତା ବୋଧହୁଏ ଗର୍ବ-ଗୌରବ ବୋଧ କରୁଅଛନ୍ତି ଯେ ତାହାଙ୍କ ହାତରେ ଗଢ଼ା ମନୁଷ୍ୟ ଶକ୍ତିରେ ଅଜ ତାହାଙ୍କ ସମତୁଲ୍ୟ ହୋଇଛୁ ଏବଂ ଏ ସାଧନାର ସିଦ୍ଧି-ସ୍ୱରୂପ ମନୁଷ୍ୟ ଦିନେ ମୃତ୍ୟୁକୁ ଯଦି ଜୟକରେ, ତାହାହେଲେ ତାହା ବିସ୍ମୟକର ହେବନାହିଁ ।

# ସାଂସାରିକ ଜ୍ଞାନ

ବାଲ୍ୟକାଳରେ ଜ୍ଞାନ ଉପାର୍ଜନରେ ଯତ୍ନଶୀଳ ହେବା ଅବଶ୍ୟ କର୍ତ୍ତବ୍ୟ; ଯେହେତୁ ବାଲ୍ୟରେ ଜ୍ଞାନ ସଞ୍ଚୟ କଲେ ସମୟରେ ଉପକାର ଦର୍ଶିଥାଏ । ସଂସାର ସମ୍ବନ୍ଧରେ ଅଭିଜ୍ଞତା ସଂସାରରୁ ଉପଲବ୍ଧ ହୁଏ । ସ୍ୱଗୃହରେ ଦିନ ଯାପନରୁ ସଂସାର ଜ୍ଞାନ ଉପଲବ୍ଧ ହୁଏ ନାହିଁ । କେବଳ ପୁସ୍ତକ ଅଧ୍ୟୟନରୁ ମଧ୍ୟ ସେ ବିଜ୍ଞତା ଲାଭ ସହଜ ନୁହେଁ; କିନ୍ତୁ ପୁସ୍ତକପାଠରେ ବିଚକ୍ଷଣତା ସମ୍ବନ୍ଧରେ ଅନେକ ସାହାଯ୍ୟ ମିଳେ, ଅଧିକନ୍ତୁ ଲୋକଚରିତ୍ର ସମ୍ବନ୍ଧରେ ଯଥେଷ୍ଟ ଅଭିଜ୍ଞତା ଅର୍ଜନ ନିଶ୍ଚିତ ।

ପୁସ୍ତକ ଅଧ୍ୟୟନ ସମୟରେ ଯେପରି ପ୍ରଗାଢ଼ ମନଃସଂଯୋଗ ଓ ଆଗ୍ରହର ପ୍ରୟୋଜନ, ବ୍ୟକ୍ତିଗତ ଚରିତ୍ର ଜାଣିବାକୁ ହେଲେ ଏକାଗ୍ର ଚିତ୍ତରେ ସେହିପରି ମନୋନିବେଶ ଆବଶ୍ୟକ । କିଏ କେଉଁ ଭାବରେ କଥାକୁହେ, କାହାର କିଭଳି ପ୍ରକୃତି, କେଉଁଠାରେ କାହାର ଦୌର୍ବଲ୍ୟର ବିକାଶ ଏବଂ କେଉଁ କାର୍ଯ୍ୟରେ ଅହଙ୍କାରର ସଞ୍ଚାର—ଏ ସମସ୍ତ ବିଷୟରେ ମନୋଯୋଗୀ ହେବାହିଁ କର୍ତ୍ତବ୍ୟ ।

ଜଗତରେ ଶ୍ରେଷ୍ଠ ମଧ୍ୟବିତ୍ତ ଓ ନିକୃଷ୍ଟ ପ୍ରଭୃତି ସକଳ ଶ୍ରେଣୀର ଲୋକ ବାସ କରନ୍ତି । କୌଣସି ବ୍ୟକ୍ତି କୌଣସି କାର୍ଯ୍ୟରେ ଥରେ ମାତ୍ର ଅପରାଧୀ ହୋଇଅଛି ବୋଲି ତାହାପ୍ରତି ଚିରବିଦ୍ୱେଷପୂର୍ଣ୍ଣ ନେତ୍ରରେ ଦୃଷ୍ଟିପାତ କରିବା ନିତାନ୍ତ ଅନ୍ୟାୟ । ଏଭଳି ଲୋକପ୍ରତି କୌଣସି ପ୍ରକାର ବିରକ୍ତିର ଭାବ ନ ଦେଖାଇ ତାହା ସହିତ ସଦ୍ଭାବ ରଖିଥିଲେ ସମୟ ବିଶେଷରେ ଅନେକ ଉପକାର ହୋଇପାରେ, ଅଧିକନ୍ତୁ ତାହାର ପୂର୍ବ ଗର୍ହିତ କାର୍ଯ୍ୟର ସଂଶୋଧନ ସମ୍ଭବ । କିନ୍ତୁ କୌଣସି ଅପରାଧ ସକାଶେ କାହାକୁ ଘୃଣାକଲେ

ତାହା ଯାବଜ୍ଜୀବନ ସକାଶେ ତତ୍ହୃଦୟରେ ଦୃଢ଼ରୂପେ ଅଙ୍କିତ ରହିଥାଏ । ପ୍ରକୃତ ପକ୍ଷରେ କେହି କୌଣସି ବିଷୟରେ ଅପରାଧୀ ହେଲେ ତାହାପ୍ରତି ବିଦ୍ୱେଷ ଭାବ ନ ଦେଖାଇ ସେ ଭାବ ମନ ମଧ୍ୟରେ ଗୋପନ ରଖିବାହିଁ ପ୍ରକୃତ ବୁଦ୍ଧିମାନର କାର୍ଯ୍ୟ । କୌଣସି ବ୍ୟକ୍ତିଙ୍କୁ ତାହାଙ୍କ ଅନୁଷ୍ଠିତ ଅପରାଧର କଥା କହିଲେ ସେ ଯେଉଁ ପରିମାଣରେ ବିରକ୍ତ ହେବେ, ତତ୍ ସମକ୍ଷରେ ତାହାଙ୍କ ଚରିତଗତ କୁତ୍ସା, ହୀନତା କିମ୍ବା ଅକର୍ମ୍ମଣ୍ୟତାର କଥା କହିଲେ ସେ ସମଧିକ ବିରକ୍ତ ହେବେ ।

ପଦମର୍ଯ୍ୟାଦା, ଅବସ୍ଥା କିମ୍ବା ବିଦ୍ୟା ସମ୍ବନ୍ଧରେ କୌଣସି କଥାର ଉଲ୍ଲେଖକରି କୌଣସି ବ୍ୟକ୍ତିଙ୍କ ମନରେ ବେଦନା ଦେବା କଦାଚ କର୍ତ୍ତବ୍ୟ ନୁହେ । ସଦ୍‌ବିବେଚକ ଓ ପ୍ରକୃତ ଭଦ୍ରବ୍ୟକ୍ତି ମାନେ ହିଁ ଲୋକର ହିତ କାମନା କରିଥାଅନ୍ତି, ସେମାନେ ଅନ୍ୟର ପ୍ରାଣରେ ଯହିଁରେ କୌଣସି ପ୍ରକାର ଆଘାତ ଲାଗିବ ଅଥବା ସେ ମର୍ମ୍ମାହତ ହେବେ ଏଭଳି କାର୍ଯ୍ୟର ପୋଷକତା କରନ୍ତି ନାହିଁ । ଲୋକଙ୍କ ସହିତ ସଖ୍ୟଭାବରେ ବ୍ୟବହାର ରଖିଲେ, ଜଗତରେ କାହାର ସହିତ ଅପ୍ରୀତି ଓ ଅସଦ୍ଭାବର କୌଣସି ସମ୍ଭାବନା ନଥାଏ । ସାଧାରଣର ଅନୁରାଗ ଭାଜନ ହେବାକୁ ଓ ସମସ୍ତଙ୍କୁ ସନ୍ତୁଷ୍ଟ ରଖିବାକୁ ଚେଷ୍ଟା କରିବା ଅବଶ୍ୟ କର୍ତ୍ତବ୍ୟ । ଶିଷ୍ଟ ବ୍ୟବହାର ଦ୍ୱାରା ଅପ୍ରିୟ ବ୍ୟକ୍ତି ପ୍ରିୟ ହୁଏ, ଅଧିକନ୍ତୁ ସମୟ ବିଶେଷରେ ସେହି ବ୍ୟକ୍ତି ଦ୍ୱାରା ବିଶେଷ ସାହାଯ୍ୟ ମଧ୍ୟ ମିଳେ ।

କୌଣସି ଅଂଶରେ କାହାର ତ୍ରୁଟି ଦେଖିଲେ ବିଦ୍ରୂପ ବା ପରିହାସ କରି ଜନ ସମାଜରେ ତାହାକୁ ଅପଦସ୍ଥ କରିବା ସମ୍ପୂର୍ଣ୍ଣ ଅସଙ୍ଗତ । ଅପରିଣତ ବୟସ୍କ ଯୁବକବୃନ୍ଦ ସମୟ ସମୟରେ ଏଭଳି ପ୍ରସଙ୍ଗରେ ଉପହାସ କରିଥାଅନ୍ତି କିନ୍ତୁ ପରକ୍ଷଣରେ ସେ ବିଷୟର

ନିନ୍ଦାକର ସେମାନେହିଁ କ୍ଷୁଣ୍ଣ ହୁଅନ୍ତି; ଅଧିକନ୍ତୁ ଯେଉଁ ସମସ୍ତ ଲୋକେ ସେମାନଙ୍କର କଥାରେ ଏକ ସମୟରେ ଆନନ୍ଦିତ ହୋଇଥିଲେ ସେମାନେହିଁ ପରିଣାମରେ ସେମାନଙ୍କୁ ଘୃଣା ଚକ୍ଷୁରେ ଦେଖନ୍ତି ଏବଂ ଘଟଣାକ୍ରମେ ସେହି ଦଳର କାହାର କୌଣସି ପ୍ରକାର ଦୋଷଥିଲେ ସମ୍ଭବତଃ ସେମାନେ ଏଭଳି ଉପହାସ କରିପାରନ୍ତି, ଭଲ ପୂର୍ବଭଳି ମିଳାମିଶି ରହିବାକୁ ସଙ୍କୁଚିତ ହୁଅନ୍ତି । ବିଚକ୍ଷଣ ବ୍ୟକ୍ତି କାହାର କୌଣସି ପ୍ରକାର ଅପରାଧ ଦେଖିଲେ ତାହା ଉପେକ୍ଷାହିଁ କରନ୍ତି, ଏଭଳି ବ୍ୟବହାରରେ ଯାହାପ୍ରତି ଅନୁଗ୍ରହ ପ୍ରକାଶିତ ହେଲା ସେ ବ୍ୟକ୍ତି ଆଜୀବନ ତାହାଙ୍କୁ ସନ୍ତୁଷ୍ଟ ରଖିବାକୁ ଚେଷ୍ଟା କରନ୍ତି ଏବଂ ସମୟ ସମୟରେ ଅନେକ ବିଷୟରେ ସାହାଯ୍ୟ ମଧ୍ୟ କରିଥାଆନ୍ତି ।

ସଂସାର ଯାତ୍ରା ନିର୍ବାହ ସମ୍ବନ୍ଧରେ କେତେଗୁଡ଼ିଏ କୌଶଳର ପ୍ରୟୋଜନ । ଯେଉଁ ବ୍ୟକ୍ତି ବାଲ୍ୟକାଳରୁ ଏହି ସବୁ ବିଷୟରେ ଅଭ୍ୟସ୍ତ ଅଳ୍ପଦିନ ମଧ୍ୟରେ ସେ ଜନସମାଜରେ ଗଣ୍ୟମାନ୍ୟ ହୁଅନ୍ତି । ଯୌବନ ସୁଲଭ ଚପଳତା ଓ ସାମୟିକ ଶକ୍ତିର ବଶବର୍ତ୍ତୀ ହୋଇ ତତ୍ ସମ୍ବନ୍ଧରେ ଉପେକ୍ଷା କଲେ ଦିନକୁଦିନ ଯେତିକି ବୟୋବୃଦ୍ଧି ହେଉଥାଏ ସେତିକି ତାହାକୁ ଅଭିଜ୍ଞତାର ଅଭାବରୁ କଷ୍ଟପାଇବାକୁ ହୁଏ । ମାନସିକ ଶକ୍ତି ଆୟତ୍ତାଧୀନରେ ରଖିବାହିଁ ସର୍ବାଗ୍ରେ ପ୍ରୟୋଜନ, ଯହିଁରେ ଚିତ୍ତ ବିଚଳିତ ନ ହୁଏ, ମୁଖଶ୍ରୀର ଭାବାନ୍ତର ନ ଘଟେ, କଥା, କାର୍ଯ୍ୟ ଅଥବା ଦୃଷ୍ଟିରେ କୌଣସି ପ୍ରକାର ବୈଲକ୍ଷଣ୍ୟର ବିକାଶ ନ ହୁଏ ଏଥିପ୍ରତି ଦୃଷ୍ଟିରଖିବାହିଁ କର୍ତ୍ତବ୍ୟ । କାହାର କୌଣସି ଗର୍ହିତ କାର୍ଯ୍ୟ ଜ୍ଞାତ ହୋଇ ହୃଦୟ ଯେତିକି ଉଦ୍ବେଳିତ ହେଉ ପଛକେ ସେ ମାନସିକ ବେଦନା ହୃଦୟାଭ୍ୟନ୍ତରରେ ଗୋପନ ରଖି ମୌଖିକ ଭାବର ଭାବାନ୍ତର ପ୍ରଦର୍ଶନ

ଅବଧେୟ । ଅପରାଧୀ ବ୍ୟକ୍ତି ପ୍ରତି ଏଭଳି ଉଦାସୀନଭାବ ଦେଖାଇଲେ ସେ କୃତଅପରାଧ ସକାଶେ ମାନସିକ ଅନୁତାପାନଳରେ ଦଗ୍ଧ ହେଉଥାଏ, ଅଧିକନ୍ତୁ ଭବିଷ୍ୟତରେ ଯହିଁରେ ଏଭଳି କାର୍ଯ୍ୟ ପୁନଶ୍ଚ ନ ହୁଏ ସେ ବିଷୟରେ ସାବଧାନ ରହିଥାଏ । ଏ ସଂସାର ଘାତ ପ୍ରତିଘାତରେ ପୂର୍ଣ୍ଣ, ପ୍ରତି ମୁହୂର୍ତ୍ତିରେ ନ୍ୟାୟ ଅନ୍ୟାୟ ଲଗି ରହିଅଛି । ଯେଉଁ ବ୍ୟକ୍ତି ଅସଙ୍ଗତ ବ୍ୟାପାରରେ କ୍ରୋଧର ବିକାଶ ଏବଂ ସଙ୍ଗତ ବ୍ୟାପାରରେ ଆନନ୍ଦର ଉଚ୍ଛ୍ୱାସ ସମ୍ବନ୍ଧରେ ବିଚ୍ଛିତାଲାଭ କରି ନାହିଁ, ପ୍ରବଞ୍ଚକ ନିକଟରେ ସେ ବ୍ୟକ୍ତି ପ୍ରତିପଦ କ୍ଷେପରେ ବଞ୍ଚିତ ହୋଇଥାଏ ।

ଲୋକମୁଖରେ କୌଣସି ବ୍ୟକ୍ତିର ଅପରାଧ କଥା ଶୁଣି ତାହା ଉପରେ ଏକାବେଳକେ ଅଗ୍ନିଶର୍ମୀ ହୋଇ ଉଠିଲେ ପ୍ରକୃତରେ ସେ ବ୍ୟକ୍ତି ଦୋଷୀ କି ନାହିଁ, ଏହାର ସବିଶେଷ ସନ୍ଧାନ ହୁଏ ନାହିଁ, ପରନ୍ତୁ ଅକସ୍ମାତ୍ ଏଭଳି କ୍ରୋଧ ହେତୁରୁ ପରିଣାମରେ ଅନୁତପ୍ତ ହେବାହିଁ ସ୍ୱାଭାବିକ । ଏଭଳି ବ୍ୟାପରରେ ପ୍ରକୃତ ଅପରାଧୀ ମଧ୍ୟ ସମୟ ସମୟରେ ବିନାଦଣ୍ଡରେ ଅବ୍ୟାହତିଲାଭ କରିଥାଏ । କାହାର କୌଣସି ଦୋଷର କଥା ଶ୍ରବଣ କଲେ ତତ୍‌ସମ୍ବନ୍ଧରେ ସବିଶେଷ ସନ୍ଧାନ ଆବଶ୍ୟକ । ଯେଉଁ ପର୍ଯ୍ୟନ୍ତ ତାହାର ଦୋଷ ସମ୍ବନ୍ଧରେ ପ୍ରକୃତ ପ୍ରମାଣ ନ ମିଳେ ସେ ପର୍ଯ୍ୟନ୍ତ ତାହାକୁ କୌଣସି ପ୍ରକାର ତିରସ୍କାର ଅଥବା ଅପମାନ ସୂଚକ ବାକ୍ୟ ପ୍ରୟୋଗ କରିବା ଅସଙ୍ଗତ । କ୍ରୋଧର ସଞ୍ଚାରରେ ଲୋକେ ହିତାହିତ ଜ୍ଞାନଶୂନ୍ୟ ହୋଇଯାଆନ୍ତି । କ୍ରୋଧ—ଉନ୍ମାଦର ଆଭାସ ମାତ୍ର, ଏ ଅବସ୍ଥାରେ କ୍ରୋଧ ଉପସ୍ଥିତ ହେଲେ କିଛିକ୍ଷଣ ସକାଶେ ମୌନାବଲମ୍ବନ କର୍ତ୍ତବ୍ୟ; ଯେହେତୁ ପରକ୍ଷଣରେ ସ୍ଥିରବୁଦ୍ଧିରେ ଘଟନାବଳୀର

ପୁଙ୍ଖାନୁପୁଙ୍ଖ ଆଲୋଚନା କରେ ସହଜରେ ସେ ଭାବ ହୃଦୟରୁ ଅନ୍ତର୍ହିତ ହୋଇଯାଏ ।

ଯେଉଁ ବ୍ୟକ୍ତି ବଗୃର ଶକ୍ତି ଓ ପ୍ରବୃତ୍ତି ଆୟତ୍ତାଧୀନରେ ରଖିବାକୁ କ୍ଷମ, ତାହାଙ୍କର ଅଭ୍ୟନ୍ତରୀଣ ଭାବ କଦାଚ ବାହାରକୁ ପ୍ରକାଶ ପାଏ ନାହିଁ ; ମନୁଷ୍ୟର ପ୍ରକୃତି ଏଡ଼େ ଦୁର୍ବଳ ଯେ ଦୋଷର କଥା ଶ୍ରବଣମାତ୍ରେହିଁ କ୍ରୋଧର ସଞ୍ଚାର ହୁଏ । ଏ ସ୍ଥଳରେ ବିଜ୍ଞବ୍ୟକ୍ତି ବିଶେଷ ସର୍ତକତା ସହକାରେ ଚିତ୍ତସଂଯମ କରିଥାଆନ୍ତି । ଜ୍ଞାନବାନ ବ୍ୟକ୍ତି ବିପଦ କାଳରେ କ୍ୱଚିତ୍ ବିଚଳିତ ହୁଅନ୍ତି । ସେ ବିପଦଗ୍ରସ୍ତ ହୋଇ ଦ୍ୱିଗୁଣ ଉତ୍ସାହ ଓ ପରିଶ୍ରମସହ କାର୍ଯ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି ଏବଂ ଶେଷ ପର୍ଯ୍ୟନ୍ତ ସମଭାବରେ ତାହା କରନ୍ତି, ତାହାଙ୍କ ପକ୍ଷରେ କୌଣସି କାର୍ଯ୍ୟ ଅସାଧ୍ୟ ବୋଲି ବିବେଚିତ ହୋଇ ନ ଥାଏ । ଯେଉଁକି ବିପଦ ଉପସ୍ଥିତ ହେଉ ପଛକେ ଅଧ୍ୟବସାୟ ଓ ଉତ୍ସାହ ପ୍ରୟୋଗ କରି ଓ ବିଚକ୍ଷଣତା ଉପରେ ନିର୍ଭର ପୂର୍ବକ କାର୍ଯ୍ୟରେ ହସ୍ତକ୍ଷେପ କଲେ ପରିଣାମରେ ଜୟଲାଭ ଅବଶ୍ୟମ୍ଭାବୀ । ଏଭଳି କାର୍ଯ୍ୟ ସୂତ୍ରରେ ଅନେକଙ୍କ ସହିତ ବାଦ ବିସମ୍ବାଦର ସମ୍ଭାବନା । କେହି ବିରକ୍ତ ହୁଅନ୍ତି, କେହି ଅବା ଭୟର କାରଣ ହୁଅନ୍ତି, କିନ୍ତୁ ବିଶେଷ ବିଚକ୍ଷଣତା ସହିତ କାର୍ଯ୍ୟକଲେ ପରିଣାମରେ ସମସ୍ତେହିଁ ସଖ୍ୟତା ସୂତ୍ରରେ ଆବଦ୍ଧ ହୁଅନ୍ତି ଏବଂ କାହାର ସହିତ କୌଣସି ପ୍ରକାର ବିରୋଧ ଉପସ୍ଥିତ ହୁଏ ନାହିଁ । ଯେତେବେଳେ କୌଣସି ବ୍ୟକ୍ତି କୌଣସି କାର୍ଯ୍ୟରେ ନିଯୁକ୍ତ ରହିଅଛନ୍ତି ତାହାଙ୍କୁ ସେତେବେଳେ ଅନ୍ୟ କାର୍ଯ୍ୟର ଭାର ପ୍ରଦାନ କଲେ କଦାଚ ତାହା ସୁଚାରୁ ରୂପେ ସମ୍ପନ୍ନ ହୋଇ ନ ଥାଏ ।

ଲୋକଙ୍କର ପ୍ରକୃତି ବୁଝିବାକୁ ହେଲେ ନିଜର ପ୍ରକୃତି ବୁଝିବା ଉଚିତ । ପ୍ରବୃତ୍ତି, ବିଶେଷରେ ଭେଦାନ୍ତର ଥିଲେହେଁ ସାଧାରଣତଃ

ସମସ୍ତଙ୍କର ପ୍ରକ୍ରିୟା ଏକ ପ୍ରକାର ଦୃଷ୍ଟ ହୋଇଥାଏ । ମୁଁ ଯହିଁରେ ବିରକ୍ତ କିମ୍ବା ସନ୍ତୁଷ୍ଟ ହୁଏଁ ଅନ୍ୟମାନେ ତହିଁରେ ଆନନ୍ଦିତ କିମ୍ବା ଦୁଃଖିତ ହୋଇ ପାରନ୍ତି । ମୁଁ ସ୍ୱୟଂ କଅଣ କରୁଅଛି, ମୋହୋର ମତଗତି କିଭଳି ହେଉଅଛି, କେଉଁ ବିଷୟରେ ଅନୁରାଗ ଅଥବା ବିରାଗର ସଞ୍ଚାର ହୁଏ, ତତ୍ପ୍ରତି ବିଶେଷ ଲକ୍ଷ୍ୟ ରଖିଲେ ଅନ୍ୟର ଭାବଗତି ବୁଝାଯିବ । ପ୍ରତ୍ୟେକ କାର୍ଯ୍ୟରେ ଯେଉଁମାନେ ତ୍ରୁଟି ଧରନ୍ତି କିମ୍ବା ଦୋଷ ଦେଖାଇ ଦିଅନ୍ତି ସେମାନଙ୍କ ସହବାସ ବିରକ୍ତିର କାରଣ ହୁଏ । ସେଭଳି ଲୋକସହିତ ସଦ୍ଭାବରେ ବାସ୍ତବ ପ୍ରୀତିଲାଭ ଅସମ୍ଭବ । ଏହି ହେତୁରୁ ସେଭଳି ସଂସର୍ଗ ପରିତ୍ୟାଗହିଁ ପ୍ରୟୋଜନ ନତୁବା ବନ୍ଧୁତ୍ୱ ସ୍ଥାପନ କରିବାକୁ ଯାଇ ତତ୍ପରବର୍ତ୍ତିରେ ଶତ୍ରୁତା ଅପରିହାର୍ଯ୍ୟ ହୋଇଥାଏ ।

ଲୋକମାନଙ୍କ ସହିତ ପରିଚୟ ରଖିବାକୁ ହେଲେ ପ୍ରବୃତ୍ତିକୁ ସ୍ୱବଶରେ ରଖିବା ଆବଶ୍ୟକ । କାରଣ ସଂସାରରେ ସମସ୍ତଙ୍କ ପ୍ରବୃତ୍ତି ସମାନ ନୁହେ । ହୁଏତ ସାମାନ୍ୟ କାରଣରୁ କେହି କ୍ରୋଧ ପ୍ରକାଶ କରିଥାଏ, କାହାର ଅବା ଅକସ୍ମାତ୍ ହିଂସାର ସଞ୍ଚାର ହୁଏ । ଏଭଳି ଅବସ୍ଥାରେ ଯହିଁରେ ସମସ୍ତେ ସନ୍ତୁଷ୍ଟ ହୋଇ ପାରନ୍ତି, କେହି କୌଣସି ଅନ୍ୟାୟ କଲେହେଁ ସେଥିପ୍ରତି ମନରେ କ୍ରୋଧର ଉଦ୍ରେକ ସତ୍ତ୍ୱେ ମୌଖିକ କୌଣସି ପ୍ରକାର ବିକୃତଭାବ ପ୍ରକାଶ କରିବା ଯୁକ୍ତି ସଙ୍ଗତ ନୁହେ । କାହାର କୌଣସି କାର୍ଯ୍ୟ ଦେଖି ତତ୍ସମ୍ବନ୍ଧରେ କୌଣସି ମନ୍ତବ୍ୟ ପ୍ରକାଶ ପୂର୍ବରୁ ମନେ ମନେ ସେହି ବିଷୟର ଚିନ୍ତା କରିବା ଅବଶ୍ୟକ । ଏଭଳି ଶିଷ୍ଟଭାବରେ ବ୍ୟବହାର କଲେ ଅସତ୍ ବ୍ୟକ୍ତିର ହୃଦୟ ମଧ୍ୟ ଆର୍ଦ୍ର ହୋଇ ଉଠିବ । ଯାହାର କାର୍ଯ୍ୟରେ ପଦେ ପଦେ ଅନିଷ୍ଟର ସମ୍ଭାବନା

ରହିଅଛି ସେ ବ୍ୟକ୍ତି ମଧ୍ୟ ଅପକାର ପରିବର୍ତ୍ତିରେ ସମୟୋଚିତେ ଉପକାରର ପରିଚୟ ଦେଇଥାଏ ।

ସ୍ୱାର୍ଥର ବ୍ୟାଘାତ ହେଲେ ଲୋକେ କ୍ଷୁବ୍‌ଧ ହୋଇଥାଅନ୍ତି । ପ୍ରକୃତପକ୍ଷେ ସମସ୍ତଙ୍କର ସ୍ୱ ସ୍ୱ ମର୍ଯ୍ୟାଦା ପ୍ରତି ଦୃଷ୍ଟି ରହିଅଛି । କୌଣସି ବ୍ୟକ୍ତି ଅକାରଣରେ ମାନସମ୍ଭ୍ରମର ହାନିହେଲେ ଅନ୍ତର୍ଜ୍ୱାଳାରେ ହୃଦୟ ଦଗ୍‌ଧ ହେଉଥାଏ । ସେ ସମୟରେ କ୍ରୋଧର ଉତ୍ତେଜନାରେ ହିତାହିତ ବିବେଚନା ଶକ୍ତି ଲୁପ୍ତ ହୁଏ । ଏ ଅବସ୍ଥାରେ ମନର ଉଦ୍‌ବେଗ ମନ ମଧ୍ୟରେ ସମ୍ବରଣ କରିବା କର୍ତ୍ତବ୍ୟ । ମୌଖିକ ଆଳାପ ପରିଚୟରେ ତାହା ସହିତ କୌଣସି ପ୍ରକାର ଅସଦ୍ଭାବ ନ ଦେଖାଇଲେ ଉତ୍ତରୋତ୍ତର ସେହି ବ୍ୟକ୍ତି ଅନୁତପ୍ତ ହୁଏ ଏବଂ ଅନ୍ୟାୟ ପୂର୍ବକ ସେ ଯେଉଁ ଅନିଷ୍ଟ କରିଅଛି ତାହାର ପ୍ରତିକାର ସକାଶେ ଚେଷ୍ଟାକରିଥାଏ ; କିନ୍ତୁ ଅଗ୍ନିଶର୍ମା ହୋଇ ତାହାପ୍ରତି କଟୁବାକ୍ୟ ପ୍ରୟୋଗ କଲେ ତତ୍କୃତ ଅପମାନର କୌଣସି ପ୍ରତିବିଧାନ ହୁଏ ନାହିଁ—ଏଥିରେ ଦୈହିକ ଓ ମାନସିକ ଅପକାର ସାଧିତ ହୋଇଥାଏ ।

କେହି କାହାର କୌଣସି ଅନିଷ୍ଟ କଲେ କ୍ରୋଧବଶରୁ ପ୍ରତିହିଂସା ସକାଶେ ଯେଉଁ ବ୍ୟକ୍ତି ସଚେଷ୍ଟ ହୁଏ, ତାହାକୁ ବିଜ୍ଞ ବ୍ୟକ୍ତିବର୍ଗ ଘୃଣା କରିଥାଅନ୍ତି । ପ୍ରତିହିଂସାରେ ଅପମାନର କୌଣସି ପ୍ରତିକାର ହୁଏ ନାହିଁ କିନ୍ତୁ ପ୍ରତିଶୋଧ ନେବାକୁ ଉଦ୍ୟୋଗୀ ବ୍ୟକ୍ତିଙ୍କର ପଦେ ପଦେ ଲାଞ୍ଛନା ଓ କଷ୍ଟଭୋଗ ଅସମ୍ଭବ ନୁହେ । ମୋତେ କେହି ଅପମାନ କରିଅଛି ବୋଲି ତାହାକୁ ଯେ ଅପମାନ କରିବାକୁ ହେବ ଏକଥା ବିଜ୍ଞବ୍ୟକ୍ତି କେବେହେଁ ଅନୁମୋଦନ କରିବେ ନାହିଁ । କାରଣ ତାହାର ପ୍ରତିଶୋଧ ନେବାକୁ ହେଲେ ଅନେକଙ୍କ ସହିତ ବିବାଦରେ ବିଜଡ଼ିତ ହେବାହିଁ ସ୍ୱତଃସିଦ୍ଧ ।

ଏରୂପ ସ୍ଥଳରେ ଯେଉଁମାନଙ୍କ ସହିତ କୌଣସି ପ୍ରକାର ମନୋମାଳିନ୍ୟର କେବେହେଁ କାରଣ ନ ଥିଲା ସେମାନେ ମଧ୍ୟ ଶତ୍ରୁହୋଇ ଉଠନ୍ତି । ସମସ୍ତଙ୍କ ସହିତ ବନ୍ଧୁତ୍ୱ ରଖିବାହିଁ ସଂସାରର ନୀତି । ଯେଉଁ କଥାରେ ଲୋକେ କ୍ରୁଦ୍ଧ କିମ୍ବା କ୍ଷୁଣ୍ଣ ହେବେ ସେ କଥାର ଉତ୍ଥାପନ ଏକାବେଳକେ ଅନୁଚିତ୍ । ଯେଉଁ ବ୍ୟକ୍ତି ସମସ୍ତଙ୍କ ସହିତ ସଦ୍ଭାବ ସଂସ୍ଥାପନରେ ସମର୍ଥ ତାହାଙ୍କ ପ୍ରତି କାହାର ବିଦ୍ୱେଷଭାବ ହୋଇ ନ ଥାଏ—ସମସ୍ତେହିଁ ତାହାଙ୍କୁ ପ୍ରୀତି ଚକ୍ଷୁରେ ଦେଖିଥାଆନ୍ତି ।

ମୂଳତଃ ସାଂସାରିକ ଜ୍ଞାନ ସମ୍ବନ୍ଧରେ ସାଧାରଣଙ୍କ ଉଲ୍ଲିଖିତ ବିଷୟ ସର୍ବଦା ପ୍ରଣିଧାନ ଯୋଗ୍ୟ । କୌଣସି ସଭାର ବକ୍ତୃତା କିମ୍ବା ବାଦାନୁବାଦରୁ ଏହା ସୂଚିତ ହୋଇ ନ ଥାଏ । ସାଂସାରିକ ଜ୍ଞାନ ସମ୍ବନ୍ଧରେ ଏତିକି ବୋଲିଯାଇ ପାରେ ଯହିଁରେ ଆତ୍ମୋନ୍ନତିର ପ୍ରବଳ ଆକାଂକ୍ଷା ଅଗ୍ନି ଭଳି ପ୍ରାଣରେ ପ୍ରଜ୍ୱଳିତ ହୁଏ, ଚରିତ୍ର ଗଠନର ପ୍ରବୃତ୍ତି ପ୍ରବଳ ହୁଏ, ସ୍ୱାର୍ଥନାଶର ବାସନା ଉଦ୍ଦୀପ୍ତ ହୁଏ, ଜ୍ଞାନ ମାର୍ଜ୍ଜିତ ଓ ଉନ୍ନତ ହୁଏ, ସମସ୍ତଙ୍କ ସହିତ ପ୍ରକୃତ ଭ୍ରାତୃଭାବ ବର୍ଦ୍ଧିତ ହୁଏ ଏବଂ ସର୍ବୋପରି ମାନବ-ପ୍ରୀତିର ଅଭୂତ ଉଦ୍ଦୀପନା ହୋଇଥାଏ । ଏହି କଠୋର ସଂସାରରେ ପ୍ରେମିକ ହୃଦୟ ସହିତ ସ୍ନେହାର୍ଦ୍ର ହୃଦୟର ସଂସ୍ପର୍ଶ, ଜ୍ଞାନ, ସ୍ପୃହା ଦ୍ୱାରା ଜ୍ଞାନ ଆକାଂକ୍ଷାର ଉଦ୍ରେକ, ଚରିତ୍ରର ସଂସ୍ପର୍ଶରେ ସଚ୍ଚରିତ୍ରତାର ଉତ୍କର୍ଷ ଏବଂ ଭକ୍ତର ସଂଶ୍ରବରେ ଅଖଣ୍ଡ ଭକ୍ତିର ବୃଦ୍ଧିହିଁ ପ୍ରକୃତ କାମ୍ୟ । ଏହା କେତେଜଣଙ୍କର ଭାଗ୍ୟରେ ଘଟିଥାଏ, ମାତ୍ର ଅନୁଶୀଳନ ଓ ସାଧନା ଦ୍ୱାରା ଏହା ଲାଭ କରିବା ଅସମ୍ଭବ ନୁହେ । ସଂସାରରପଥ ଅତ୍ୟନ୍ତ ପିଚ୍ଛିଳ—ପ୍ରତି ପଦ ବିକ୍ଷେପରେ ପତନ ଅନିବାର୍ଯ୍ୟ ଏହା ଜ୍ଞାନୀମାନଙ୍କର ମତ । ସୁତରାଂ ସଂସାରପଥ ଅତିକ୍ରମ କରୁଁ କରୁଁ

ଗୋଡ଼ ଖସି ପଡ଼ିଯିବା ସବୁବେଳେ ସହଜ । ଉତ୍ଥାନ ଓ ପତନ ସବୁବେଳେ ସବୁଅବସ୍ଥାରେ ଲଗି ରହିଅଛି ଓ ରହିଥିବ । ମାତ୍ର ଉତ୍ଥାନଠାରୁ ପତନର ସମ୍ଭାବନା ଅତ୍ୟନ୍ତ ଅଧିକ ।

ମାନବର ପତନର ଗୂଢ଼ତତ୍ତ୍ୱ ଯେଉଁମାନେ ଜାଣିଅଛନ୍ତି ସେମାନେ ଏହା ସ୍ୱୀକାର କରିବେ ଯେ ସକଳ ଶୃଙ୍ଖଳ ଅପେକ୍ଷା ଆସକ୍ତି ଓ ଅଭ୍ୟାସର ଶୃଙ୍ଖଳ ସର୍ବାପେକ୍ଷା ଦୁଶ୍ଛେଦ୍ୟ । ଯେଉଁ ପାପ ସହିତ ମିଷ୍ଟତ୍ୱର ସଂଯୋଗ ରହିଅଛି, ଯାହା ଆମ୍ଭମାନଙ୍କୁ ସୁଖୀ କରିଇ ପତିତ କରେ ତାହାର ହସ୍ତରୁ ଅତିକ୍ରମ କରିବା ଅତିଶୟ ଦୁଷ୍କର । ଏହା ଉପରେ ଯେବେ ସେ ପାପ ଅଭ୍ୟସ୍ତ ହୁଏ, ସେ ସୁଖ ଯେବେ ବାରମ୍ବାର ଭୋଗ କରିଥାଏଁ ତାହାହେଲେ ଆଉ ବାଟ ନାହିଁ । ସେତେବେଳେ ଯେବେ ତାହା ହସ୍ତରୁ ନିଷ୍କୃତି ଲଭ ସକାଶେ ଚେଷ୍ଟା କରେଁ, ସେତେବେଳେ ଦେଖିବ ବାଲୁକା ନିର୍ମିତ ସେତୁଭଳି କୌଣସି ପ୍ରତିଜ୍ଞାହିଁ ସ୍ଥିର ରହିବ ନାହିଁ । ବାରମ୍ବାର ପ୍ରତିଜ୍ଞା ଓ ବାରମ୍ବାର ଭଙ୍ଗ ଏବଂ ବାରମ୍ବାର ଉତ୍ଥାନ ଓ ବାରମ୍ବାର ପତନ ଅନିବାର୍ଯ୍ୟ । ମନ ଯାତନାରେ ଅସ୍ଥିର ହୁଏ, କ୍ରନ୍ଦନକରେ, ଅନୁତପ୍ତ ହୁଏ ସତ୍ୟ କିନ୍ତୁ ତଥାପି ପତଙ୍ଗଭଳି ଅନଳରେ ପତିତ ହୋଇଥାଏ ।

---

## ଖାଦ୍ୟ ବିଷୟ

ଜୀବ ଯେତେଦିନ ମାତୃ ଜଠରରେ ଥାଏ ସେତେଦିନ ପ୍ରତ୍ୟକ୍ଷ ଭାବରେ ଭ୍ରୂଣ ଦେହ ମାତୃ ରକ୍ତରୁ ତାହାର ଗଠନୋପାଦାନ ସଂଗ୍ରହ କରେ ସତ୍ୟ, କିନ୍ତୁ ପରୋକ୍ଷ ଭାବରେ ଗର୍ଭିଣୀ ଯାହା ଖାଏ, ତାହାର କିୟଦଂଶ ରକ୍ତରେ ପରିଣତ ହୋଇ ଭ୍ରୂଣ ଦେହର ଗଠନ ଓ ତାହାର ପୁଷ୍ଟି ସାଧନ କରିଥାଏ ।

ଭୂମିଷ୍ଠ ହେବା ଉତ୍ତାରୁ ଖାଦ୍ୟହିଁ ଶିଶୁ ଦେହ ଗଠନର ଏକମାତ୍ର ଉପାଦାନ । ବୟଃପ୍ରାପ୍ତି ସଙ୍ଗେ ସଙ୍ଗେ ଶିଶୁର ଖାଦ୍ୟ ମଧ୍ୟ ପରିବର୍ତ୍ତିତ ହୋଇଥାଏ । ଦନ୍ତୋଦ୍‌ଗମ ଉତ୍ତାରୁ ଶିଶୁକୁ ସାମାନ୍ୟ ସାମାନ୍ୟ କଠିଣ ଖାଦ୍ୟ ଗ୍ରହଣରେ ଅଭ୍ୟସ୍ତ କରାଇବାକୁ ହୁଏ । ପରେ ଶିଶୁର ବୟସ ବଢ଼ିବା ସଙ୍ଗରେ ତାହାର ଖାଦ୍ୟର ଯେପରି ପ୍ରକାର ଭେଦ ହୁଏ, ପରିମାଣରେ ମଧ୍ୟ ତାହା ବୃଦ୍ଧି ପାଇଥାଏ । ଏଥିରୁ ବୁଝାଯିବ ମନୁଷ୍ୟ ଯେପରି ଖାଦ୍ୟ ଭକ୍ଷଣ କରେ ତାହାର ଦେହ ମଧ୍ୟ ସେହି ଭାବରେ ପରିଣତି ଲାଭ କରେ ।

ପ୍ରକୃତ ପକ୍ଷରେ ଶରୀର ଗଠନ ସକାଶେ ଯାହାକିଛି ଉପାଦାନ ଆବଶ୍ୟକ ହୁଏ, ଖାଦ୍ୟହିଁ ସେହି ସମସ୍ତ ଉପାଦାନ ଯୋଗାଇଦିଏ । ଖାଦ୍ୟହିଁ ପ୍ରଧାନତଃ ଆମ୍ଭମାନଙ୍କ ଦୈହିକ, ମାନସିକ ଓ ନୈତିକ ଅବସ୍ଥା ନିୟନ୍ତ୍ରିତ କରିଥାଏ । ଖାଦ୍ୟର ପରିବର୍ତ୍ତନରେ ଶରୀର ଓ ମନର ଅବସ୍ଥାର ପରିବର୍ତ୍ତନ ହୋଇଥାଏ । ମନୁଷ୍ୟକୁ ଯେପରି ଭାବରେ ଗଢ଼ିବାକୁ ଇଚ୍ଛା ତାହାକୁ ସେହି ଭାବରେ ଖାଦ୍ୟ ଯୋଗାଇଲେ ମନୁଷ୍ୟ ଠିକ ସେହି ଭାବରେ ଗଢ଼ି ଉଠିବ ।

ଦେହ ଉପରେ ଯେତେବେଳେ ଖାଦ୍ୟର ପ୍ରଭାବ ଏତେ ଅଧିକ, ସେତେବେଳେ ଦେହକୁ ସୁଗଠିତ, ସ୍ୱାସ୍ଥ୍ୟପୂର୍ଣ୍ଣ, ରୋଗ ପ୍ରତିଷେଧକ୍ଷମ କରି ଗଢ଼ିବାକୁ ହେଲେ ଖାଦ୍ୟର ଗୁଣ, ପ୍ରକୃତି, ପରିମାଣ ପ୍ରଭୃତିର ତତ୍ତ୍ୱ ନେବା ଆବଶ୍ୟକ । କିନ୍ତୁ ଦେହ ଗଠନର ଦିଗରୁ ମନୁଷ୍ୟର ଖାଦ୍ୟ ବିଚାର କରି ଦେଖାଯାଏ ନାହିଁ । ସାଧାରଣତଃ କ୍ଷୁଧା ନିବୃତ୍ତି ଓ ରସନାର ତୃପ୍ତି ସାଧନ ସକାଶେ ଖାଦ୍ୟ ଗୃହୀତ ହୋଇଥାଏ । ଯେଉଁ ଖାଦ୍ୟରେ ଏହି ଦୁଇଟି ପ୍ରୟୋଜନ ସିଦ୍ଧ ହୁଏ ତାହାହିଁ ଖାଦ୍ୟ ଏବଂ ସଚରାଚର ଏହାହିଁ ଗ୍ରହଣ କରାଯାଏ । କିନ୍ତୁ ସ୍ୱାସ୍ଥ୍ୟତତ୍ତ୍ୱ ପ୍ରକୃତ ଭିତ୍ତି ଉପରେ ଗଠିତ

ହେଲେ ଅମ୍ଭେମାନେ ପ୍ରଥମରୁ ଖାଦ୍ୟର ଗୁଣ ନିର୍ଣ୍ଣୟ କରି ଖାଦ୍ୟ ଗ୍ରହଣରେ ପ୍ରବୃତ୍ତ ହୋଇଥାଆନ୍ତୁ ଏବଂ କେଉଁ ଖାଦ୍ୟ ଶରୀର ଉପରେ କିଭଳି ଫଳୋତ୍ପାଦନ କରିବ ତାହା ପ୍ରଥମରୁ କହିପାରନ୍ତୁ । ତାହା କରୁନାହିଁ ଏବଂ କରିପାରୁ ନାହିଁ ବୋଲି ଆମ୍ଭମାନଙ୍କୁ ଏଭଳି ସବୁ ରୋଗରେ ଭୋଗିବାକୁ ହୁଏ ଯାହାନିତାନ୍ତହିଁ ଅନର୍ଥକ ଏବଂ ଅନାବଶ୍ୟକ ।

ଖାଦ୍ୟର ଗୁଣ ସମ୍ବନ୍ଧରେ ସାମାନ୍ୟ ପରୀକ୍ଷା କଲେ ଉପରୋକ୍ତ ସତ୍ୟଗୁଡ଼ିକ ପ୍ରତ୍ୟକ୍ଷ କରାଯାଇପାରେ । କେବଳ କ୍ଷୁଧା ନିବୃତ୍ତି କିମ୍ବା ରସନାର ତୃପ୍ତି ସାଧନ ସକାଶେ ଖାଦ୍ୟ ଗ୍ରହଣ ନ କରି ଖାଦ୍ୟର ହିତାହିତ ଗୁଣ ବିଚାରପୂର୍ବକ ଖାଦ୍ୟ ଗ୍ରହଣ କରିବାକୁ ଆରମ୍ଭ କଲେ ୨।୪ ଦିନ ମଧ୍ୟରେ ତାହାର ଆଶ୍ଚର୍ଯ୍ୟ ଫଳ ଦେଖି ଚମତ୍କୃତ ହେବାକୁ ହୋଇଥାଏ ।

ସଭ୍ୟତାର ଗୋଟିଏ ଅର୍ଥ କୃତ୍ରିମତା ବୋଲି କହିବାକୁ ହେବ । ମନୁଷ୍ୟ ଯେତିକି ସଭ୍ୟତାର ଉଚ୍ଚତମ ସ୍ତରକୁ ଆରୋହଣ କରୁଅଛି ସେତିକି ସେ ସବୁ ବିଷୟରେ କୃତ୍ରିମତାର ଆଶ୍ରୟ ଗ୍ରହଣ କରୁଅଛି—ପ୍ରକୃତିଙ୍କର ବ୍ୟବସ୍ଥାରୁ ସେତିକି ସେ ଦୂରକୁ ଘୁଞ୍ଚି ଯାଉଅଛି । ଖାଦ୍ୟଗ୍ରହଣ ବିଷୟରେ ମନୁଷ୍ୟର କୃତ୍ରିମତା ଚରମକୁ ଉଠିଯାଇଅଛି । ଖାଦ୍ୟ ଗ୍ରହଣ କାଳରେ ସେମାନେ ପ୍ରାକୃତିକ ନିୟମର ମଧ୍ୟ ଶାସନ ମାନନ୍ତି ନାହିଁ, ନିଜର ବିଚାର ବୁଦ୍ଧିର ମଧ୍ୟ ଅନୁସରଣ କରନ୍ତି ନାହିଁ ।

ଖାଦ୍ୟ ଗ୍ରହଣ ସମୟରେ ଠିକିଏ ବିଚାର କରି ଦେଖାଯାଏ ନାହିଁ । ଯାହା ତୁଣ୍ଡକୁ ଭଲଲାଗେ, ତାହାକୁ ମନୁଷ୍ୟ ଖାଏ କିମ୍ବା ଯାହାକୁ ଯାହା ମିଳେ ସେ ତାହାହିଁ ଖାଏ କିମ୍ବା ଯେ ଯାହା ପସନ୍ଦ କରେ ସେ ତାହା ଖାଏ । ଯେଉଁ ଖାଦ୍ୟ ଚକ୍ଷୁକର

ଖାଇବାକୁ ହୁଏ ସେ ଖାଦ୍ୟ ରନ୍ଧନରେ ମଧ୍ୟ ସ୍ୱିଛମତ ଯତ୍ନ ନିଆଯାଏ ନାହିଁ । ପୁଣି ଖାଦ୍ୟ ଗ୍ରହଣ ବିଷୟରେ ଗତାନୁଗତିକତାର ପ୍ରଭାବ ମଧ୍ୟ କମ ନୁହେ । ଜଣକର ଦେଖି ଅପର ଜଣେ ଯେପରି ଖାଦ୍ୟ ଖାଏ, ସେହିପରି ପୂର୍ବପୁରୁଷମାନଙ୍କର ଆଚରଣର ଅନୁସରଣ କରି ମନୁଷ୍ୟ ତାହାର ଖାଦ୍ୟ ବ୍ୟବହାର ନିୟନ୍ତ୍ରିତ କରେ ।

ଅସ୍ମମାନଙ୍କର ପୂର୍ବପୁରୁଷମାନେ ଖାଦ୍ୟ ସମ୍ବନ୍ଧରେ ବିଶେଷ ବିଚାର କରୁଥିଲେ । ପ୍ରାୟ ସକଳ ପ୍ରକାର ଖାଦ୍ୟର ଗୁଣାଗୁଣ ସେମାନେ ନିର୍ଣ୍ଣୟ କରିଥିଲେ । ଯେଉଁ ଖାଦ୍ୟ ଯାହା ପକ୍ଷରେ ଉପଯୁକ୍ତ ବୋଲି ସେମାନେ ବୁଝୁଥିଲେ ତାହା ସକାଶେ ସେଭଳି ଖାଦ୍ୟହିଁ ସେମାନେ ବ୍ୟବସ୍ଥା କରୁଥିଲେ । ଆମିଷ ଓ ନିରାମିଷ ଭୋଜନ, ହବିଷ୍ୟାନ୍ନ ଗ୍ରହଣ, ତିଥି ଓ ବାର ହିସାବରେ ବିଶେଷ ବିଶେଷ ଖାଦ୍ୟ ଗ୍ରହଣ କିମ୍ବା ବର୍ଜନ ପ୍ରଭୃତି ନିୟମମାନ ସୁଚିନ୍ତିତ ଓ ସୁବିବେଚିତ ଥିଲା । ଏହି ହେତୁରୁ ସେମାନେ ଦୀର୍ଘଜୀବୀ ମଧ୍ୟ ଥିଲେ । କିନ୍ତୁ ପାଶ୍ଚାତ୍ୟ ଶିକ୍ଷାର ସଂସ୍ପର୍ଶକୁ ଆସି ଅମ୍ଭେମାନେ ଖାଦ୍ୟ ବିଚାର ପରିତ୍ୟାଗ କରି ଯେତେବେଳେ ସେତେବେଳେ ଯାହା ତାହା ଆହାରରେ ପ୍ରବୃତ୍ତ ହୋଇଅଛୁଁ ବୋଲି ଆମ୍ଭମାନଙ୍କ ଅୟୁ ଦିନକୁ ଦିନ କମି ଯାଉଅଛି ବୋଧହୁଏ । ଯେଉଁମାନେ ଅନିୟମିତ ଭାବରେ ଆହାର କରି କରି କ୍ରମାଗତ ରୋଗରେ ପଡ଼ି ପଡ଼ି ଶୀର୍ଣ୍ଣ ହୋଇଅଛନ୍ତି ସେମାନଙ୍କୁ ପରିଣାମରେ ଖାଦ୍ୟ ବିଷୟରେ କିଛି କିଛି ସଂଯମ ଅବଲମ୍ବନ କରିବାକୁ ଦେଖାଯାଏ । ନତୁବା ଯେଉଁ ପର୍ଯ୍ୟନ୍ତ ଦେହ ଏକାବେଳକେ ଅକର୍ମ୍ମଣ୍ୟ ହୋଇ ନ ଯାଏ, ସେ ପର୍ଯ୍ୟନ୍ତ ଲୋକ ଆହାର ବିଷୟରେ ସାବଧାନ ହେବାକୁ ଏବଂ ଖାଦ୍ୟର ଲୋଭ ସମ୍ବରଣ କରିବାକୁ ଇଚ୍ଛୁକ ହୋଇ ନ ଥାଆନ୍ତି ।

ଖାଦ୍ୟର ଗୁଣାଗୁଣ ବିଷୟରେ ସମସ୍ତ ଚିକିତ୍ସକଙ୍କର ଅବହିତ ହେବା କର୍ତ୍ତବ୍ୟ । ଚିକିତ୍ସା ବିଦ୍ୟାଳୟ ମାନଙ୍କରେ ଖାଦ୍ୟ ନିର୍ବାଚନ ବିଷୟରେ ଯତ୍ ସାମାନ୍ୟ ମନୋଯୋଗ ପ୍ରଦତ୍ତ ହୋଇଥାଏ ମାତ୍ର ।

ଉପଯୁକ୍ତ ରୂପେ ଖାଦ୍ୟ ନିର୍ବାଚନ କଲେ, ଯାହା ତାହା ଖାଦ୍ୟ ଗ୍ରହଣରେ ବିରତ ହେଲେ ସ୍ୱାସ୍ଥ୍ୟରକ୍ଷା ସକାଶେ ପ୍ରଭୂତ ସାହାଯ୍ୟ ମିଳେ । ଖାଦ୍ୟ ବିଷୟରେ ଅସଂଯମର ମୂଳ ଆମ୍ଭମାନଙ୍କ ସଭ୍ୟତା । ସଭ୍ୟତା ମାନେହିଁ କୃତ୍ରିମତା—ପ୍ରକୃତ ସହିତ ବିରୋଧ । ଅଥଚ ଖାଦ୍ୟ ଗ୍ରହଣ କରି ଶରୀର ରକ୍ଷା କରିବାହିଁ ସମ୍ପୂର୍ଣ୍ଣ ପ୍ରାକୃତିକ ବ୍ୟାପାର । ପ୍ରକୃତି ଦେବୀ ପ୍ରାଣୀମାନଙ୍କୁହିଁ ଖାଦ୍ୟାଖାଦ୍ୟ ନିର୍ବାଚନରେ ଗୋଟିଏ ସହଜ ସ୍ୱାଭାବିକ ସଂସ୍କାର ଦେଇଅଛନ୍ତି । ସେହି ସହଜାତ ସଂସ୍କାରର ଅନୁସରଣ କରି ଖାଦ୍ୟ ଗ୍ରହଣ କଲେ ଖାଦ୍ୟ ଦୋଷରେ କେବେହେଁ ଶରୀର ଅସୁସ୍ଥ ହୋଇ ନ ପାରେ । ଏହା ଯେବେ ହୁଅନ୍ତା ତାହାହେଲେ ଜୀବରାଜ୍ୟ ଏତେଦିନକୁ ପ୍ରାଣୀଶୂନ୍ୟ ହୋଇ ପଡ଼ନ୍ତା ସନ୍ଦେହ ନାହିଁ । କାରଣ ମନୁଷ୍ୟ ବ୍ୟତୀତ କୌଣସି ଜୀବକୁ କୌଣସି ପ୍ରକାର ସଭ୍ୟତା ଖାଦ୍ୟ ନିର୍ବାଚନରେ ସହାୟତା କରେ ନାହିଁ । ମାନବେତର ପ୍ରାଣୀମାନେ ନିଜର ସଂସ୍କାର ବଶରୁ ସେମାନଙ୍କର ଶରୀର ରକ୍ଷାର ଉପଯୋଗୀ ଖାଦ୍ୟ ମାତ୍ରହିଁ ଗ୍ରହଣ କରନ୍ତି । ଯାହା ସେମାନଙ୍କର ଶରୀର ରକ୍ଷାର ଉପଯୋଗୀ ନୁହେ ତାହା ମଧ୍ୟ ସେହି ସଂସ୍କାର ବଶରୁ ପରିତ୍ୟାଗ କରିଥାଅନ୍ତି । ଏ ବିଷୟରେ ସେମାନଙ୍କର ସହଜାତ ସଂସ୍କାରହିଁ ଏକମାତ୍ର ଉପଦେଷ୍ଟା—ଅପର କାହାର ଦ୍ୱାରା ସେମାନେ ନିୟନ୍ତ୍ରିତ ହୁଅନ୍ତି ନାହିଁ ।

ଡାରଉଇନ୍ ସାହେବଙ୍କର ଙ୍ବିବର୍ତ୍ତନବାଦ କଳ୍ପନାଟିକି ଯେବେ ସତ୍ୟ ହୁଏ, ତାହାହେଲେ ବାନରଜାତିକୁ ମନୁଷ୍ୟର

ନିକୃଷ୍ଟତମ ଅସ୍ଥୀସ୍ୱ ପ୍ରାଣୀବୋଲି ସ୍ୱୀକାର କରିବାକୁ ହେବ । ସେହି ବାନରମାନଙ୍କ ମଧ୍ୟରେ ମନୁଷ୍ୟ ଭଳି ସଭ୍ୟତାର ଉନ୍ମେଷ ହୋଇ ନାହିଁ । ସେମାନେ ସେମାନଙ୍କର ଜନ୍ମଗତ ସହଜାତ ସଂସ୍କାର ଦ୍ୱାରା ପରିଚାଳିତ ହୋଇଥାଆନ୍ତି । ସେମାନେ କଅଣ ଖାଆନ୍ତି ? ସେମାନେ ନିରାମିଷ ଭୋଜୀ । ସେମାନେ ମନୁଷ୍ୟ ଭଳି ରନ୍ଧନ କରି ଖାଆନ୍ତି ନାହିଁ । ସେମାନେ ପ୍ରଧାନତଃ ଫଳମୂଳ ଓ ଶାଗ ପ୍ରଭୃତି ଖାଇ ଜୀବନ ଧାରଣ କରନ୍ତି । ଏଥିରେ ସେମାନେ ଅସୁସ୍ଥ ହୁଅନ୍ତି ନାହିଁ । ବାନରମାନେ ଯେଉଁ ଫଳ ଖାଆନ୍ତି ତାହା ବାରମାସ ଫଳେ ନାହିଁ । ଯେତେବେଳେ ଫଳ ଫଳେ ସେତେ-ବେଳେ ସେମାନେ ଅଧିକ ପରିମାଣରେ ଖାଆନ୍ତି ଏବଂ ସେମାନେ ମୋଟା ହୁଅନ୍ତି, ଅର୍ଥାତ୍ ସେମାନଙ୍କ ଶରୀର ମଧ୍ୟରେ ଅତିରିକ୍ତ ଶକ୍ତି ଓ ତେଜ ଚର୍ବିର ଆକାରରେ ସଞ୍ଚିତ ହେଉଥାଏ । ଫଳ ଯେତେବେଳେ କମିଯାଏ ଏବଂ ଦୁଷ୍ପ୍ରାପ୍ୟ ହୁଏ ସେତେବେଳେ ଏହି ସଞ୍ଚିତ ତେଜ ସେମାନଙ୍କର ଶରୀର ଓ ସ୍ୱାସ୍ଥ୍ୟ ରକ୍ଷା କରେ— ସେମାନେ ବଞ୍ଚି ରହନ୍ତି । ବାନର ଭଳି ଅନ୍ୟାନ୍ୟ ପ୍ରାଣୀର ଅବସ୍ଥା ମଧ୍ୟ ଏହିଭଳି । ସକଳ ସମୟରେ ସେମାନଙ୍କର ଖାଦ୍ୟ ମିଳେନାହିଁ । ଯେତେବେଳେ ମିଳେ ସେତେବେଳେ ସେମାନେ ଅଧିକ ପରିମାଣରେ ଖାଆନ୍ତି, ଯେତେବେଳେ ନ ମିଳେ ସେତେବେଳେ ଉପବାସ କରନ୍ତି । ଅଥଚ ସେମାନେ ବଞ୍ଚି ରହନ୍ତି—ଖାଦ୍ୟାଭାବରେ ଏକାବେଳକେ ମରନ୍ତି ନାହିଁ । ଏହା ସମ୍ଭବ ହୁଏ କିପରି ? ଖାଦ୍ୟର ପ୍ରାଚୁର୍ଯ୍ୟ ସମୟରେ ସେମାନେ ଶରୀରରେ ଅତିରିକ୍ତ ତେଜ ସଞ୍ଚୟ କରି ରଖନ୍ତି ଏବଂ ଖାଦ୍ୟ ଦୁର୍ଲ୍ଲଭ କିମ୍ବା ଦୁଷ୍ପ୍ରାପ୍ୟ ହେଲେ ତାହାହିଁ ବ୍ୟୟ କରନ୍ତି ।

ଏହାର ସାର ମର୍ମ ଏହି ଯେ ପ୍ରକୃତିର ଅନୁସରଣ କରି ଚଳନ୍ତି ବୋଲି ଇତର ପ୍ରାଣୀମାନେ ଯେତେବେଳେ କ୍ଷୁଧାର୍ତ୍ତ ହୁଅନ୍ତି କେବଳ ସେତେବେଳେ ସେମାନେ ଖାଆନ୍ତି । ଏମାନଙ୍କର ଆହାରର କୌଣସି ନିୟମ ନାହିଁ କିମ୍ବା ସମୟର କୌଣସି ସ୍ଥିରତା ମଧ୍ଯ ନାହିଁ । କ୍ଷୁଧାର୍ତ୍ତ ହେଲେ ଏବଂ ଖାଦ୍ୟ ମିଳିଲେ ସେମାନେ ଖାଆନ୍ତି । ପ୍ରକୃତିଙ୍କର ନିୟମହିଁ ଏହି ପ୍ରକାର । ମନୁଷ୍ୟର ମଧ୍ୟ ଯଥାସାଧ୍ୟ ପ୍ରକୃତିର ଅନୁସରଣ କରି ଚଳିବାର ଚେଷ୍ଟା କର୍ତ୍ତବ୍ୟ । ନିର୍ଦ୍ଦିଷ୍ଟ ସମୟ ଉପସ୍ଥିତ ହେଲମାତ୍ରେ କ୍ଷୁଧାର ଉଦ୍ରେକ ହେଉ ନ ହେଉ କେବଳ ପ୍ରଥା ମାନି ଚଳିବା ସକାଶେ ଆହାର କରିବା ସଙ୍ଗତ ନୁହେ । ଇତର ପ୍ରାଣୀମାନଙ୍କ ଆହାରର ଆଉ ଗୋଟିଏ ପ୍ରାକୃତିକ ନିୟମ ଏହି ଯେ ସେମାନେ ଏକ ସମୟରେ ଏକହିଁ ପ୍ରକାର ଖାଦ୍ୟ ପେଟ ପୂରି ଖାଆନ୍ତି । ନାନା ପ୍ରକାର ଖାଦ୍ୟ ଏକ ସମୟରେ ଏକ ସଙ୍ଗରେ ଖାଇବା ସେମାନଙ୍କର ପ୍ରଥା ନୁହେ । ଇତର ପ୍ରାଣୀମାନେ ଯେତେବେଳେ ଯେଉଁ ଖାଦ୍ୟ ପାଆନ୍ତି ସେତେବେଳେ ସେମାନଙ୍କର କ୍ଷୁଧାର ଉଦ୍ରେକ ହୋଇଥିଲେ ସେହି ଏକମାତ୍ର ଖାଦ୍ୟରେ ଉଦର ପୂର୍ତ୍ତି କରିଥାଆନ୍ତି । ଏଥିରୁ କିଛି ସେଥିରୁ କିଛି ଏଭଳି ନାନାବିଧ ଖାଦ୍ୟ ଏକ ସଙ୍ଗରେ ଉଦରସ୍ଥ ନ କରୁଥିବାରୁ ବିରୁଦ୍ଧ ଭୋଜନର କ୍ଲେଶ ଓ ଅସୁବିଧା ସେମାନଙ୍କୁ ସହ୍ୟ କରିବାକୁ ହୁଏ ନାହିଁ । କିନ୍ତୁ ସଭ୍ୟମନୁଷ୍ୟ କଅଣ କରେ ? ସେ ନାନା ପ୍ରକାର ଖାଦ୍ୟର ଆୟୋଜନ କରି ଖାଇବାକୁ ବସିଯାଏ । କେବଳ ଜଳଯୋଗ କରିବାକୁ ସୁଦ୍ଧା ପାଞ୍ଚ ସାତ ପ୍ରକାର ଖାଦ୍ୟ ନ ହେଲେ ନ ଚଳେ । ଏକ ଏକ ପ୍ରକାର ଖାଦ୍ୟ ଜୀର୍ଣ୍ଣ କରିବାକୁ ଏକ ଏକ ପ୍ରକାର ପାଚକ ରସ ନିର୍ଗତ ହୁଏ । ଏକହିଁ ପାଚକ ରସ ସବୁ ପ୍ରକାର ଖାଦ୍ୟ ଜୀର୍ଣ୍ଣ କରି ନପାରେ । ଏକହିଁ ସମୟରେ

ଅନେକ ପ୍ରକାର ଖାଦ୍ୟ ଭୋଜନ କଲେ ପରିପାକ କ୍ରିୟାର ବାଧା ଉପସ୍ଥିତ ହେବାହିଁ ସ୍ୱାଭାବିକ । ଏକପ୍ରକାର ଖାଦ୍ୟ ଯେବେ ଜୀର୍ଣ୍ଣ ହୁଏ, ଅନ୍ୟ ସମସ୍ତ ଖାଦ୍ୟ ଜୀର୍ଣ୍ଣ ହୋଇ ନ ଥାଏ । କିମ୍ବା ଏକ ଖାଦ୍ୟ ଅପରଖାଦ୍ୟ ଜୀର୍ଣ୍ଣ କରିବା ପକ୍ଷରେ ବାଧା ଘଟାଇପାରେ । ଏହା ଫଳରୁ ପାକସ୍ଥଳୀରେ ଭୟଙ୍କର ବିଶୃଙ୍ଖଳା ଉପସ୍ଥିତ ହୁଏ । ସୁତରାଂ ଏକ ସମୟରେ ଏକାଧିକ ଖାଦ୍ୟ ନ ଖାଇବା ଭଲ । ଦୁଇ ତିନି ପ୍ରକାର ଖାଦ୍ୟ ଏକ ସମୟରେ ଚଳିପାରେ; କିନ୍ତୁ ଏକପ୍ରକାର ହେଲେ ସର୍ବୋତ୍ତମ ହୁଏ । ଏହା ସହଜରେ ଶୀଘ୍ର ହଜମ ହୋଇଯାଏ । ଏକାଧିକ ଖାଦ୍ୟ ଏକସଙ୍ଗରେ ଖାଇଲେ ପରିପାକକ୍ରିୟା ଜଟିଳ ହୋଇଯାଏ ।

ଆମ୍ଭେମାନେ ସାଧାରଣତଃ ଦିବା ରାତ୍ରିରେ ଅନେକ ଥର ଖାଉଁ । ଏହା ମଧ୍ୟ ଅନୁଚିତ, କାରଣ ତାହା ପ୍ରକୃତିର ଅନୁମୋଦିତ ନିୟମ ନୁହେ । ସକାଳରୁ ଅନେକ ଲୋକେ ଜଳଯୋଗ କରି ଥାଆନ୍ତି,- ସେତେବେଳେ ଅବଶ୍ୟ କ୍ଷୁଧାର ଉଦ୍ରେକ ହୋଇ ନ ଥାଏ, କେବଳ ଖାଇବାର ଅଭ୍ୟାସ ବୋଲି ଖାଇବାକୁ ହୁଏ । ଏହି ହେତୁରୁ ସେ ସମୟରେ ଉପଯୁକ୍ତ ଖାଦ୍ୟ ନିର୍ବାଚନ ଆଡ଼କୁ କୌଣସି ଦୃଷ୍ଟି ନ ଥାଏ—ଯେଉଁ ଦିନ ଯାହା ମିଳିଗଲା ସେଦିନ ତାହାହିଁ ଖାଇବାକୁ ହୁଏ । ଯେଉଁମାନଙ୍କର ରୀତିମତ କ୍ଷୁଧାର ଉଦ୍ରେକ ହୁଏ ନାହିଁ, ସେମାନଙ୍କର କେବଳ ଅଭ୍ୟାସବଶତଃ ସକାଳ ଜଳଯୋଗ ନ କରିବାହିଁ ଯୁକ୍ତିସଙ୍ଗତ । ଦୁଇ ଚାରିଦିନ ସେହି ଜଳଯୋଗ ବନ୍ଦ ରଖିଲେ ଦେଖାଯିବ ମଧ୍ୟାହ୍ନ ଭୋଜନ ସମୟରେ ପ୍ରବଳ କ୍ଷୁଧାର ଉଦ୍ରେକ ହୋଇଥିବ । ସେତେବେଳେ ଅତ୍ୟନ୍ତ ତୃପ୍ତିସହକାରେ ଖାଇବାକୁ ହୋଇଥାଏ । ଲେଖକର ଏହା ଅନୁଭବ-ସିଦ୍ଧ ଘଟଣା । ପ୍ରାତଃକାଳରେ ଜଳଯୋଗ କଲେ ( ଯାହା ଖିଆଯାଉ

ପଚ୍ଛକେ ) ମଧ୍ୟାହ୍ନ ଆହାର ସମୟରେ ତାହା ସମ୍ୟକ୍ ରୂପେ ଜୀର୍ଣ୍ଣ ହେବାର ଯଥେଷ୍ଟ ଅବସର ପାଏ ନାହିଁ । ଏକେତ ସକାଳର ଜଳଯୋଗ ସମୟରେ ଯଥେଷ୍ଟ କ୍ଷୁଧାର ଉଦ୍ରେକ ହୁଏ ନାହିଁ, ଏହା ଉପରେ ଅକ୍ଷୁଧା ସମୟରେ ମଧ୍ୟାହ୍ନ ଆହାର କଲେ କ୍ଷୁଧା ଅଙ୍କୁର କମିଯାଏ । ତଥି-ନକ୍ଷତ୍ର ବିଶେଷରେ ଆମ୍ଭମାନଙ୍କର ଯେଉଁ ଉପବାସ କରିବାର ନିୟମ ରହିଅଛି ତାହାର ଉପକାରିତା ଏଥିରୁ ଉପଲବ୍ଧି ହେବ । ଉପବାସ ଉତ୍ତାରୁ ଯେତେବେଳେ ଖାଇବାକୁ ହୁଏ ସେତେବେଳେ କ୍ଷୁଧାର ଯେପରି ଉଦ୍ରେକ ହୋଇଥାଏ ଆହାରରେ ସେଭଳି ରୁଚି ହୋଇଥାଏ । ଏକହିଁ ଦ୍ରବ୍ୟରେ ଉଦର ପୂର୍ଣ୍ଣ କରି ଉପବାସ ଭଙ୍ଗକଲେ ସହଜରେ ଜୀର୍ଣ୍ଣ ହୋଇଥାଏ । ପୂର୍ଣ୍ଣ କ୍ଷୁଧା ସମୟରେ ଯେଉଁ ଖାଦ୍ୟରେ ରୁଚି ହୁଏ, ଏଭଳି ଗୋଟିଏ ମାତ୍ର ଖାଦ୍ୟ ବାଛି ତାହାଦ୍ୱାରା ପୂର୍ଣ୍ଣାହାର କଲେ ତାହାର ଉପକାରିତା ଅତି ସହଜରେ ବୁଝାଯିବ । ଅଜୀର୍ଣ୍ଣ ରୋଗଗ୍ରସ୍ତ ବ୍ୟକ୍ତି ପକ୍ଷରେ ଔଷଧ ଅପେକ୍ଷା ଉପବାସ ସମଧିକ ଫଳପ୍ରଦ ଚିକିତ୍ସା । ଚବିଶ ଘଣ୍ଟା କିମ୍ବା ପ୍ରୟୋଜନ ହେଲେ ତତୋଧିକ ସମୟ ଅର୍ଥାତ୍ ପୂର୍ଣ୍ଣକ୍ଷୁଧାର ଉଦ୍ରେକ ନ ହେବା ପର୍ଯ୍ୟନ୍ତ ଉପବାସ କରି ଏହା ଉତ୍ତାରୁ ଯେଉଁ ଖାଦ୍ୟରେ ରୁଚି ହୁଏ ତାହା ଭକ୍ଷଣ କଲେ ଅଜୀର୍ଣ୍ଣ ରୋଗ ଦୂରୀଭୂତ ହୁଏ । ଆଉ କୌଣସି ଚିକିତ୍ସାର ପ୍ରୟୋଜନ ହୁଏ ନାହିଁ । ଏଭଳି ଆହାରର ବ୍ୟବସ୍ଥାରେ ଖାଦ୍ୟ ଉତ୍ତମରୂପେ ଜୀର୍ଣ୍ଣ ହୁଏ, ଶରୀରରେ ବଳାଧାନ ମଧ୍ୟ ହୁଏ । ଅବଶ୍ୟ ଏହା ସହିତ ଆହାରର ଅନ୍ୟାନ୍ୟ ଗୋଟିଏ ଯୋଡ଼ିଏ ନିୟମ ମଧ୍ୟ ମାନିବାକୁ ହେବ । ତାହା ସ୍ୱାସ୍ଥ୍ୟରକ୍ଷା ବିଧିର ଅନ୍ତର୍ଗତ । ଅତିସନ୍ତ୍ୱର ଖାଇବା ଅନୁଚିତ; ଧୀରେ ଧୀରେ ଉତ୍ତମ ରୂପେ ଚର୍ବଣ କରି ଖାଦ୍ୟଦ୍ରବ୍ୟ ଉତ୍ତମରୂପେ ଚୂର୍ଣ୍ଣ କରି ପରେ ତାହା ଗଳାଧଃକରଣ କରିବାକୁ ହେବ ।

ଆହାର କାଳରେ ମନର ଅବସ୍ଥା ଏଭଳି ଥିବାର ଆବଶ୍ୟକ ଯେ ଯାହା ଖାଦ୍ୟଜୀର୍ଣ୍ଣ କରିବା ପକ୍ଷରେ ଅନୁକୂଳ । ଅର୍ଥାତ୍ ମନ ସେ ସମୟରେ ସମ୍ପୂର୍ଣ୍ଣ ପ୍ରସନ୍ନ ଥିବ । ସେ ସମୟରେ ମନ ଯେପରି କୌଣସି ପ୍ରକାର ଉତ୍ତେଜିତ ଅଥବା ରିପୁର ବଶବର୍ତ୍ତୀ ନ ଥାଏ । ଆହାରରେ ଯେପରି ରୁଚି ଥାଏ ଏବଂ ଯେପରି ତୃପ୍ତିପୂର୍ବକ ଆହାର ହୋଇପାରେ । ଯେଉଁ ଖାଦ୍ୟରେ ରୁଚି ନ ହୁଏ ସେ ଭଳି ଖାଦ୍ୟ ଆହାର କଲେ ଜୀର୍ଣ୍ଣ ହୁଏ ନାହିଁ । କ୍ଷୁଧାର ଉଦ୍ରେକ ନ ହେଲେ ମଧ୍ୟ ଯେଉଁମାନେ କେବଳ ଅଭ୍ୟାସବଶତଃ ଏବଂ ପ୍ରଥାର ଅନୁସରଣ କରିବାକୁ ହୁଏ ବୋଲି ନିର୍ଦ୍ଧାରିତ ସମୟରେ ଆହାର କରନ୍ତି ସେମାନଙ୍କର ସବୁ ସମୟରେ ରୁଚି ହୋଇ ନ ଥାଏ । ଏଭଳି ଆହାର କଲେ ଖାଦ୍ୟ ଜୀର୍ଣ୍ଣ କରିବା କଠିନ । କ୍ଷୁଧାର ଉଦ୍ରେକ ହେଲେ ଏବଂ ରୁଚିପୂର୍ବକ ଆହାର କଲେ ତାହାର ଫଳ ବାସ୍ତବିକ ଭଲ ହୁଏ । ପ୍ରବଳ କ୍ଷୁଧା ସମୟରେ ଆହାର ମିଳିଲେ ମୁଖରେ ସ୍ୱତଃହିଁ ଲାଳାର ସ୍ଫୁରଣ ହୁଏ ଏବଂ ସେହିପରି ପାକସ୍ଥଳୀରେ ସ୍ୱତଃହିଁ ପାଚକରସ ନିର୍ଗତ ହୁଏ । କ୍ଷୁଧା ସମୟରେ ଯେ ଆହାରର ଇଚ୍ଛା ପ୍ରବଳ ହୁଏ ସେହି ଇଚ୍ଛାହିଁ ଲାଳା ଓ ପାଚକ-ରସର ଜନନୀ । ଏହି ଭାବରେ ଯଥେଷ୍ଟ ଲାଳା ଓ ପାଚକରସ ନିର୍ଗତ ହେବାରୁ ଖାଦ୍ୟ ଚର୍ବଣର ଯେପରି ସୁବିଧା ହୁଏ, ତାହା ଜୀର୍ଣ୍ଣ କରିବା ମଧ୍ୟ ସେହିପରି ସହଜ ହୋଇଥାଏ ।

ପ୍ରତ୍ୟହ କେତେଥର ଆହାର କରିବା ଉଚିତ ? କେହି ତିନିଥର, କେହି ଚାରିଥର, କେହି ଅବା ଆହୁରି ଅଧିକଥର ଆହାର କରିଥାଆନ୍ତି । କେହି ପୁଣି ଦୁଇଥର ପୂର୍ଣ୍ଣାହାର ଯଥେଷ୍ଟ ବୋଲି ବିବେଚନା କରନ୍ତି—ଏହାହିଁ ସମ୍ପୂର୍ଣ୍ଣ ସଙ୍ଗତ । ଦରିଦ୍ର ଉତ୍କଳରେ

ସମସ୍ତଙ୍କ ପକ୍ଷରେ ଦିନ ମଧ୍ୟରେ ଥରେ ସୁଦ୍ଧା ଖାଇବାକୁ ମିଳେ ନାହିଁ ।

ଚାଉଳ ଆମ୍ଭମାନଙ୍କର ପ୍ରଧାନ ଖାଦ୍ୟ । କିନ୍ତୁ ଏ ଯୁଗରେ ସଚରାଚର ଯେଉଁ ଚାଉଳ ବାଣିଜ୍ୟାର୍ଥ ବଜାରକୁ ଆସେ ତାହା ଶରୀର ପୋଷଣୋପଯୋଗୀ ଅବସ୍ଥାରେ ନ ଥାଏ । ଦେଖିବାମାନଙ୍କ ମନ ଭୁଲାଇବା ସକାଶେ ଚାଉଳ ଧଳା କରିବାକୁ ଯାଇ ତାହାର ସାରପଦାର୍ଥଟିକ କାଢ଼ି ଦେବାକୁ ହୋଇଥାଏ । ଧାନରୁ ଦୁଇ ପ୍ରକାରରେ ଚାଉଳ ପ୍ରସ୍ତୁତ ହୋଇଥାଏ—ଗୋଟିଏ କଳରେ ଅନ୍ୟଟି ଢେଙ୍କିରେ । କଳ ଚାଉଳରେ ଉପରର ଆବରଣଟିକ ନ ଥାଏ—ଢେଙ୍କିକୁଟା ଚାଉଳରେ କେତେ ପରିମାଣରେ ଥାଏ । ସୁତରାଂ ଖାଦ୍ୟ ହିସାବରେ କଳ ଚାଉଳ ଅପେକ୍ଷା ଢେଙ୍କିକୁଟା ଚାଉଳ ଅଧିକତର ପୁଷ୍ଟିକର । ଓଡ଼ିଶାରେ ଢେଙ୍କିକୁଟା ଚାଉଳହିଁ ପର୍ଯ୍ୟାପ୍ତ ପରିମାଣରେ ମିଳୁଥିଲା—ମାତ୍ର ଏଯୁଗରେ ବହୁ ସଂଖ୍ୟକ ଚାଉଳ-କଳର ପ୍ରତିଷ୍ଠା ଯୋଗୁଁ ଢେଙ୍କିକୁଟା ଚାଉଳ ସହର-ମାନଙ୍କରେ ଏକ ପ୍ରକାର ଦୁଷ୍ପ୍ରାପ୍ୟ ହୋଇଅଛି—କଳ ସକାଶେ "କୁଟିଖାଇବ" ପ୍ରବଚନର ସାର୍ଥକତା ଲୁପ୍ତ ।

ଉସୁନା ଚାଉଳ ପ୍ରସ୍ତୁତ କରିବା ସମୟରେ ଧାନ୍ୟର ମଧ୍ୟସ୍ଥିତ ଦ୍ରବଣୀୟ ପଦାର୍ଥ ଜଳ ସହିତ ବାହାରିଯାଏ; କିନ୍ତୁ ଅରୁଆ ଚାଉଳ ସୂର୍ଯ୍ୟପକ୍ୱ ହେବାରୁ ଏହି ପଦାର୍ଥ ଗୁଡ଼ିକ ପୂର୍ଣ୍ଣମାତ୍ରାରେ ରହିଥାଏ । ସୁତରାଂ ଉସୁନା ଚାଉଳଠାରୁ ଅରୁଆ ଚାଉଳ ଅଧିକ ଉପକାରୀ ।

ଭୋଜନର ସ୍ୱୋହଳପଣ ଉପକାର ଖାଦ୍ୟ ପ୍ରସ୍ତୁତ କରିବା ଉପରେ ନିର୍ଭର କରେ । ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ଲୋକେ ଉସୁନା ଚାଉଳ ଖାଆନ୍ତି, ଏହା ଉପରେ ପୁଣି ଭାତ ରାନ୍ଧି ପେଜ ଗାଳି ପକାନ୍ତି । ସୁତରାଂ ଆମ୍ଭେମାନେ ଯେଉଁ ପଦାର୍ଥକୁ ଭାତ ବୋଲି

ଆହାର କରନ୍ତି ତହିଁରେ ସାର ପଦାର୍ଥ ଅଧିକ ନ ଥାଏ । ମାତ୍ର ଓଡ଼ିଶାର ଅନ୍ତ୍ୟଜ ଜାତିମାନେ (କନ୍ଧ, ଶଅର, ଭୂମିଜ, ଗଣ୍ଡ, ଡଅଁଳା, ସାନ୍ତାଳ ପ୍ରଭୃତି) ଭାତ ବୋଲି ଯାହାକୁ ଆହାର କରନ୍ତି ତହିଁରେ ସାର ପଦାର୍ଥ ଥାଏ—ସେମାନେ ଭାତରୁ ପେଜ ଗାଳନ୍ତି ନାହିଁ ।

ଭାତ ଖାଇ ସମ୍ୟକ୍ ଉପକାର ଲାଭ କରିବାକୁ ହେଲେ ଭାତ ରାନ୍ଧିବାବେଳେ ଏଭଳି ପରିମାଣରେ ପାଣି ଦେବାର ଆବଶ୍ୟକ ଯହିଁରେ ଭାତ ସୁସିଦ୍ଧ ହେବ ଏବଂ ପାଣିଟିକ ସବୁ ମରିଯିବ, ପେଜ ଗାଳିବାର ଯେପରି ପ୍ରୟୋଜନ ନ ଥିବ ।

ସକଳ ଲୋକେ ଏକହିଁ ପରିମାଣରେ ଖାଇ ପାରନ୍ତି ନାହିଁ । ଶାରୀରିକ ପରିଶ୍ରମ ଉପରେ ଖାଦ୍ୟର ପରିମାଣ ନିର୍ଭର କରିଥାଏ । ଯାହାକୁ ଯେଉଁ ପରିମାଣରେ ଦୈହିକ ପରିଶ୍ରମ କରିବାକୁ ହୁଏ ତାହାର ଖାଦ୍ୟର ପରିମାଣ ମଧ୍ୟ ସେହି ଅନୁପାତରେ ଅଧିକ କିମ୍ବା ଅଳ୍ପ ହୋଇଥାଏ ।

ଚାଉଳ ଓ ଗହମ ଉପାଦେୟ ପୁଷ୍ଟିକର ଖାଦ୍ୟ ହେଲେହେଁ କେବଳ ମାତ୍ର ଏଗୁଡ଼ିକ ଉପରେ ନିର୍ଭର କଲେ ଆମ୍ଭମାନଙ୍କର ଚଳେ ନାହିଁ । ଶାଗ କିମ୍ବା ପରିବା ଖାଦ୍ୟ ହିସାବରେ ଅପରିହାର୍ଯ୍ୟ । କିନ୍ତୁ ପାଞ୍ଚ ପ୍ରକାର ବ୍ୟଞ୍ଜନ ସହିତ ଭାତ ଅପେକ୍ଷା ଗୋଟିଏ କିମ୍ବା ଦୁଇଟି ବ୍ୟଞ୍ଜନରୁ ବେଶି ଉପକାର ମିଳିପାରେ । ଯେତେବେଳେ ଯେଉଁ ବ୍ୟଞ୍ଜନ ଖାଇବାକୁ ଇଚ୍ଛାହୁଏ, ସେହି ବ୍ୟଞ୍ଜନହିଁ ଆହାର କରିବାହିଁ ଉଚିତ । ପସନ୍ଦ ଅନୁସାରେ ଗୋଟିଏ ବ୍ୟଞ୍ଜନ ବେଶି ପରିମାଣରେ ଆହାର କଲେ ମଧ୍ୟ କ୍ଷତି ନାହିଁ । ଅନ୍ୟ ପାଞ୍ଚପ୍ରକାର ଠାରୁ ଏହି ଗୋଟିକ ଅଧିକ ଫଳପ୍ରଦ ।

କିନ୍ତୁ ରନ୍ଧନ ଦୋଷରୁ ବ୍ୟଞ୍ଜନ ମଧ୍ୟ ଅବ୍ୟବହାର୍ଯ୍ୟ ହୋଇଯାଏ । ବିଲାତିଅଳୁ ପ୍ରାୟ ବାରମାସ ମିଳେ ଏବଂ ଏହା ପୁଷ୍ଟିକର ଖାଦ୍ୟ । ଅଳୁପୋଡ଼ା ଅତି ଉତ୍କୃଷ୍ଟ ଖାଦ୍ୟ । ଯେବେ ଅଳୁ ସିଝାଇ ଖାଇବାକୁ ହୁଏ ତେବେ ସେହି ପରିମାଣରେ ପାଣି ଦେବା ଉଚିତ ଯେପରି ଅଳୁ ସୁସିଦ୍ଧ ହେବ ଅଥଚ ପାଣିଟିକି ମଧ୍ଯ ମରିଯିବ । ଭାତର ପେଜ ଗାଳିବା ଯେପରି କ୍ଷତିକାରକ ଅଳୁ ସିଝାଇ ଉଦ୍‌ବୃତ୍ତ ପାଣି ପକାଇ ଦେବାହିଁ ସେହିପରି । ବାମ୍ଫରେ ଚାଉଳ ଓ ଅଳୁ ସିଝାଇଲେ ସର୍ବୋତ୍କୃଷ୍ଟ ହୋଇଥାଏ । ପୁରୀ ଜଗନ୍ନାଥଙ୍କ ଦେଉଳରେ ଅବହମାନକାଳରୁ ବାମ୍ଫରେ ଅନ୍ନ ବ୍ୟଞ୍ଜନ ରନ୍ଧନର ପ୍ରଥା ଚାଲି ଆସିଅଛି—ସହରମାନଙ୍କରେ କୁକର୍ ( Cooker ) ନାମକ ରନ୍ଧନ ଯନ୍ତ୍ର ପ୍ରଚଳିତ ।

ଗ୍ରାମ ସମୂହରେ ବ୍ରାହ୍ମୀଚୁଡ଼ି ପୋଡ଼ି ଖାଇବା ଗୋଟିଏ ପ୍ରଧାନ ଏବଂ ଉତ୍କୃଷ୍ଟ ପୁଷ୍ଟିକର ଅହାର୍ଯ୍ୟ । ଶୀତକାଳରେ କ୍ଷେତରୁ ବ୍ରାହ୍ମୀଚୁଡ଼ି ତୋଳି ସୁସିଦ୍ଧରୂପେ ପୋଡ଼ି ପକାଇ ତହିଁରେ ଲବଣ ଓ ସୋରିଷ ତେଲ୍ ସଂଯୋଗରେ ଯେଉଁ ମୁଖରୋଚକ ପୁଷ୍ଟିକର ଅହାର୍ଯ୍ୟ ପ୍ରସ୍ତୁତ ହୁଏ ତାହା ସହରବାସୀଙ୍କର ଦୁର୍ଲ୍ଲଭବସ୍ତୁ । ପଲ୍ଲୀଗ୍ରାମରେ ଶୀତ-କାଳରେ ଏହା ପରମ ଉପଭୋଗର ବସ୍ତୁ ।

ଫଳରେ କ୍ଷୁଧା ଓ ରୁଚି ଖାଦ୍ୟର ପ୍ରଧାନ ନିୟାମକ ଏଥିରେ ସନ୍ଦେହ ନାହିଁ ।

---

# ଖାଦ୍ୟ-ବିଜ୍ଞାନ

ବିଜ୍ଞାନାନୁଶୀଳନ ବଳରୁ ଅମ୍ଭେମାନେ ବୁଝିଅଛୁଁ ଅଧିକ ଭୋଜନଦ୍ୱାରା ଅମ୍ଭମାନଙ୍କ ଦେହର ପୁଷ୍ଟିସାଧନ କିମ୍ବା ସ୍ୱାସ୍ଥ୍ୟରକ୍ଷା ହୋଇ ନ ଥାଏ । ଯେଉଁ ସମସ୍ତ ଖାଦ୍ୟରେ ପୁଷ୍ଟିକର ଉପାଦାନ ଅଛି—ଯେଉଁ ସମସ୍ତ ଖାଦ୍ୟ ଦେହର ନିତ୍ୟ ଅପଚୟ ମୋଚନରେ କ୍ଷମ, ଏଭଳି ଖାଦ୍ୟ ଗ୍ରହଣରେ ଅମ୍ଭମାନଙ୍କ ସ୍ୱାସ୍ଥ୍ୟ ଭଲ ଥାଏ, ଦେହର ପୁଷ୍ଟିସାଧନ ହୋଇଥାଏ ଏବଂ ଦେହ କର୍ମପଟୁ ଓ ସାମର୍ଥ୍ୟ-ବିଶିଷ୍ଟ ହୁଏ । ବୈଜ୍ଞାନିକମାନେ ଖାଦ୍ୟରେ ଏହି ପୁଷ୍ଟିକର ଉପାଦାନର ନାମ 'ଭିଟାମିନ୍' ( **Vitamin** ) ବୋଲି ଦେଇ ଅଛନ୍ତି ।

ଗବେଷଣାର ଅନୁଶୀଳନ ଫଳରୁ ଏ ଭିଟାମିନର ଶ୍ରେଣୀ ମଧ୍ୟ ନିର୍ଦ୍ଦିଷ୍ଟ ହୋଇଅଛି । ସାଧାରଣତଃ ଚାରି ପ୍ରକାର ଭିଟାମିନ୍ ରହିଅଛି, ତାହା ଯଥାକ୍ରମେ 'ଏ' 'ବି' 'ସି' ଓ 'ଡି' ।

ଯେଉଁ ଖାଦ୍ୟରେ 'ଏ' ଭିଟାମିନ୍ ଅଛି ସେ ଖାଦ୍ୟ ରୋଗ ପ୍ରତିଷେଧକ ( **Anti-infective** ) । ଏ ଖାଦ୍ୟ ଗ୍ରହଣରେ ସର୍ଦ୍ଦି, କାଶ, ସଂକ୍ରାମକ ଜ୍ୱର, ଚକ୍ଷୁରୋଗ ଅମ୍ଭମାନଙ୍କୁ ଆକ୍ରମଣ କରି ନ ପାରେ । ଶୈଶବ କାଳରେ 'ଏ' ଭିଟାମିନ୍ ଯୁକ୍ତ ଖାଦ୍ୟ ସବୁଠାରୁ ଉପଯୋଗୀ । ଦୁଧ, ଛେନା, ଲହୁଣି, ମୂଳା ଶାଗ ପ୍ରଭୃତିରେ ପ୍ରଚୁର 'ଏ' ଭିଟାମିନ୍ ରହିଅଛି ।

'ବି' ଭିଟାମିନ୍‌ରେ ଦେହର ଯନ୍ତ୍ରାଦି ସୁନିୟନ୍ତ୍ରିତ ରହେ—କୌଣସି ପ୍ରକାର ଅସ୍ୱାଚ୍ଛନ୍ଦ୍ୟ ଘଟେ ନାହିଁ । 'ବି' ଭିଟାମିନ୍‌ଯୁକ୍ତ ଖାଦ୍ୟ ଗ୍ରହଣରେ କୋଷ୍ଠବଦ୍ଧତା କିମ୍ବା ଅଜୀର୍ଣ୍ଣତା ଦୂର ହୁଏ

ଏବଂ ମନ ଭଲ ରହେ—ଶରୀରର ପେଶୀ ଗୁଡ଼ିକ ସୁସ୍ଥ ଓ ସବଳ ରହେ । ବାଦାମ, ଦୁଧ, ବିଲାତି ବାଇଗଣ, ସବୁ ପ୍ରକାର ପରିବା ଓ ଶାଗରେ 'ବି' ଭିଟାମିନ୍ ପ୍ରଚୁର ପରିମାଣରେ ରହିଅଛି ।

'ସି' ଭିଟାମିନ୍ ଯୁକ୍ତ ଖାଦ୍ୟରେ ଚର୍ମରୋଗ ହୁଏ ନାହିଁ । ଦନ୍ତମୂଳ ସୁସ୍ଥ ଓ କଠିନ ରହେ । ଦେହରେ ବ୍ୟଥା ଓ ବେଦନା ନ ଥାଏ । ଟଟକା ଫଳ, ଦୁଗ୍ଧ, ଶାକ, ପରିବା 'ସି' ଭିଟାମିନ୍‌ରେ ସମୃଦ୍ଧ ।

'ଡି' ଭିଟାମିନ୍ ଯୁକ୍ତ ଖାଦ୍ୟ ଗ୍ରହଣରେ ଦାନ୍ତ ଏବଂ ଅସ୍ଥି ସ୍ୱଚ୍ଛନ୍ଦ ଓ ସମର୍ଥ ହୋଇଥାଏ । ମାଛତେଲ (Codliver oil), ଅଣ୍ଡାର ହରିଦ୍ରାଂଶ, ଦୁଗ୍ଧ ଏବଂ ନାନା ପ୍ରକାର ପରିବା ବିଶେଷତଃ କୋଶଳା ଶାଗ 'ଡି' ଭିଟାମିନରେ ସମୃଦ୍ଧ ।

ଆମ୍ଭମାନଙ୍କର ନିତ୍ୟ ଖାଦ୍ୟ ରୁଚି ବିଗୁର ଗ୍ରହଣ କରିବାହିଁ ପ୍ରୟୋଜନ । ଖାଦ୍ୟରେ ବୈଚିତ୍ର୍ୟ ନଥିଲେ ରୁଚିବିକାର ଘଟିଥାଏ । ଏହି ହେତୁରୁ ସପ୍ତାହର ସାତଦିନ ମଧ୍ୟରେ ଖାଦ୍ୟ ସମ୍ବନ୍ଧରେ ବୈଚିତ୍ର୍ୟ ସମ୍ପାଦନ କଲେ, ରୁଚି ଯେପରି ଅବିକୃତ ରହିଥିବ—ସେହିପରି ସବୁ ଭିଟାମିନ୍‌ଗୁଡ଼ିକ ନିୟମିତ ଭାବରେ ଦେହରେ ଗୃହୀତ ହେଉଥିବ । ଖାଦ୍ୟରେ ଧାତୁ କିମ୍ବା ଲବଣ (Salt) ଥିବାହିଁ ପ୍ରୟୋଜନ । ଆମ୍ଭମାନଙ୍କ ଦେହରେ ସାତ ସେର ଓଜନରେ ଲବଣାଂଶ ଥିବା ଆବଶ୍ୟକ । ପ୍ରତ୍ୟହ ଆମ୍ଭମାନଙ୍କ ଦେହର ସମସ୍ତ ଉପାଦାନ ମଧ୍ୟରୁ ଅପଚୟ ଘଟୁଅଛି—ସେ ଅପଚୟ ସଙ୍ଗେ ସଙ୍ଗେ ପରିପୂର୍ତ୍ତି ନ ହେଲେ ଦେହ-ଯନ୍ତ୍ରର ବୈକଲ୍ୟ ସୁନିଶ୍ଚିତ । ଖାଦ୍ୟରେ ଲବଣ କିମ୍ବା ଧାତୁ ଗ୍ରହଣ କରିବା ଫଳରୁ ଆମ୍ଭମାନଙ୍କର ହୃଦଯନ୍ତ୍ର, ଫୁସ୍ ଫୁସ୍, ପାକସ୍ଥଳୀ ଏବଂ ମୂତ୍ରାଧାର ସୁସ୍ଥ ଓ ନିୟମିତ ରହିବ ।

ପ୍ରଧାନ ଲବଣ କିମ୍ବା ଧାତୁଗୁଡ଼ିକ ଏହି:—

୧ । କ୍ୟାଲ୍‌ସିଅମ୍ ଅଥବା ଚୂନ । ଖାଦ୍ୟରେ ପ୍ରଚୁର କାଲ୍‌ସିଅମ୍ ଥିବାହିଁ ଆବଶ୍ୟକ । ଏହା ଫଳରୁ ଦାନ୍ତ ଓ ହାଡ଼ ସୁଦୃଢ଼ ଓ ସୁସ୍ଥ ରହେ । ରକ୍ତ ପରିଷ୍କୃତ ଥାଏ, କ୍ଷତ ବେଗରେ କଷ୍ଟ ପାଇବାକୁ ହୁଏ ନାହିଁ । କ୍ୟାଲ୍‌ସିଅମ୍ ଗ୍ରହଣରେ ହୃଦଯନ୍ତ୍ରର ପେଶିଗୁଡ଼ିକ ସୁସ୍ଥ ଓ ସ୍ୱଚ୍ଛନ୍ଦ ଥାଏ । ଦୁଗ୍ଧ, ଲହୁଣୀ, ଛେନା, ବାଦାମ ଏବଂ ଶାଗ ପ୍ରଭୃତିରେ ପ୍ରଚୁର କ୍ୟାଲ୍‌ସିଅମ୍ ରହିଅଛି ।

୨ । 'ଫସଫରସ୍'—ଦାନ୍ତ ଏବଂ ହାଡ଼ର ସ୍ୱାସ୍ଥ୍ୟ ସମ୍ପାଦନରେ ସମଧିକ ଉପଯୋଗୀ । ଦୁଗ୍ଧ, ମାଂସ, ଅଣ୍ଡା, ବାଦାମ, କଦଳୀ ଏବଂ ନାନା ପ୍ରକାର ପରିବା ଗୁଡ଼ିକରେ ପ୍ରଚୁର 'ଫସଫରସ୍' ରହିଅଛି ।

୩ । ଲୌହ—ରକ୍ତର ସ୍ୱାସ୍ଥ୍ୟ ଓ ଶକ୍ତି ବର୍ଦ୍ଧକ ଏବଂ ଫୁସ୍‌ଫୁସ୍‌ର ସ୍ୱାସ୍ଥ୍ୟରକ୍ଷକ । ଯକୃତ, ମୂତ୍ରାଧାର ପ୍ରଭୃତିର ସ୍ୱାସ୍ଥ୍ୟ ସମ୍ପାଦନ କରେ । ଅଣ୍ଡା ଓ ଶାକସବ୍‌ଜି ଲୌହ ଉପାଦାନରେ ସମୃଦ୍ଧ ।

୪ । ଆୟୋଡିନ୍—ଆମ୍ଭମାନଙ୍କର ଗ୍ରନ୍ଥିନିଚୟର ସ୍ୱାସ୍ଥ୍ୟରକ୍ଷା କଳ୍ପରେ ଅଧିକ ପରିମାଣରେ ସହାୟତା କରିଥାଏ । ଏହା ସାଧାରଣ ସ୍ୱାସ୍ଥ୍ୟ ନିୟନ୍ତ୍ରକ । ତେଲ, ମାଛ ପ୍ରଭୃତିରେ ଯଥେଷ୍ଟ 'ଆୟୋଡିନ୍' ଅଛି ।

ଆମ୍ଭେମାନେ ପ୍ରତ୍ୟହ ଯେଉଁ ସମସ୍ତ ଖାଦ୍ୟ ଗ୍ରହଣ କରୁ ସେ ଗୁଡ଼ିକରେ ଯେପରି ଚାରି ପ୍ରକାର 'ଭିଟାମିନ୍' ଥିବାହିଁ ଆବଶ୍ୟକ, ସେହିପରି ଉଲ୍ଲିଖିତ ଚାରି ପ୍ରକାର ସଲ୍‌ଟରେ ତାହା ସମୃଦ୍ଧ ହେବାହିଁ ସର୍ବଥା ପ୍ରୟୋଜନୀୟ । ଏହି ଭିଟାମିନ୍ ଓ ସଲ୍‌ଟର ସମନ୍ୱୟରେ ଆମ୍ଭମାନଙ୍କର ଦେହ-ଯନ୍ତ୍ର ସବଳ ଓ ସୁସ୍ଥ ରହିଥିବ ! ନଚେତ୍ ଏକ ଅଙ୍ଗ ରକ୍ଷିବାକୁ ଗଲେ ଅନ୍ୟ ଅଙ୍ଗ ଭାଙ୍ଗି ପଡ଼ିବ ।

ଗରିବ ଗୃହସ୍ଥ ପକ୍ଷରେ କୋଶଳା ଶାଗହିଁ ଭିଟାମିନ୍ ଓ ସଲ୍‌ଟର ସମନ୍ୱୟ-ଜନିତ ଖାଦ୍ୟ ।

# ସଞ୍ଚୟ

ସଞ୍ଚୟ ବ୍ୟତୀତ କେହି ଅବସ୍ଥାର ଉନ୍ନତି କରିପାରନ୍ତି ନାହିଁ । ପ୍ରତ୍ୟେକ ଗୃହସ୍ଥର ପ୍ରତ୍ୟେକ ବାଳକ ବାଳିକାଙ୍କ ପକ୍ଷରେ ତାହା ଶିକ୍ଷା କରିବା ଏକାନ୍ତ ଆବଶ୍ୟକ ।

ଇଂରାଜୀ ନୀତିବିଜ୍ଞାନ କହୁଅଛି, "No idle or thriftless man ever became great ।" ଅଳସ ଏବଂ ଅପବ୍ୟୟୀ ବ୍ୟକ୍ତି କେବେହେଁ ବଡ଼ ହୋଇ ପାରନ୍ତି ନାହିଁ । ଜଗତର ସମସ୍ତ କୋଟିପତିଙ୍କ ଏବଂ ଧନୀମାନଙ୍କ ମଧ୍ୟରେ ଦୃଷ୍ଟ ହୁଏ ସେମାନେ ଅତିଶୟ ପରିଶ୍ରମୀ ଓ ଅତ୍ୟନ୍ତ କ୍ଷୁଦ୍ର କ୍ଷୁଦ୍ର ସଞ୍ଚୟରୁ ବଡ଼ଲୋକ ହୋଇଅଛନ୍ତି । ଏହି ହେତୁରୁ ପାଶ୍ଚାତ୍ୟ ଅର୍ଥନୀତି ଦେଖାଇ-ଅଛନ୍ତିଃ—"It is amongst those who never lost a moment, that we find the men who moved the world—by their science or their inventions" ସୌଭାଗ୍ୟ ଏବଂ ଯଶ ଅନାୟାସ ସାଧ୍ୟ ନୁହେ । ଯେଉଁମାନେ ଜୀବନର ଗୋଟିଏ ମୂହୂର୍ତ୍ତି ମଧ୍ୟ ବୃଥା ନଷ୍ଟ କରି ନାହାନ୍ତି—ଏଭଳି ଲୋକଙ୍କର ଅକ୍ଳାନ୍ତ ପରିଶ୍ରମର ଶିକ୍ଷା, ବିଜ୍ଞାନ ଏବଂ ଆବିଷ୍କାର ଫଳରୁ ସମଗ୍ର ଜଗତ୍ ଚଳିଥାଏ । ଯେଉଁ ସମସ୍ତ ଦେଶରେ ଏହି ଶ୍ରେଣୀୟ ଲୋକଙ୍କ ଆଧିକ୍ୟ ସେହି ଦେଶ ପ୍ରକୃତିହିଁ ସୌଭାଗ୍ୟଶାଳୀ । ଇଉରୋପ ଓ ଆମେରିକାହିଁ ଏହାର ପୂର୍ଣ୍ଣ ଦୃଷ୍ଟାନ୍ତ ।

ପାଶ୍ଚାତ୍ୟ ପଣ୍ଡିତ କହିଅଛନ୍ତି—"order is the best manager of time, unless work is properly arranged time is lost"—ଅର୍ଥାତ୍ କାର୍ଯ୍ୟର ଯଥାଯୋଗ୍ୟ ସୁବନ୍ଦୋବସ୍ତ ଯେତେବେଳ ପର୍ଯ୍ୟନ୍ତ ନ ହେବ, ସେ ପର୍ଯ୍ୟନ୍ତ ସମୟ ନଷ୍ଟ ହେବ, କାରଣ "Time is money"—ଏହି ସମୟହିଁ ଅର୍ଥ ।

ଅମ୍ଭେମାନେ ଅଡ଼ମ୍ବର ପ୍ରିୟ, ଅତିରକ୍ତ ବଚନବୀର, ଏକଘଣ୍ଟାର କାର୍ଯ୍ୟରେ ସମସ୍ତ ଦିବସ କଟାଇ ସୁବନ୍ଦୋବସ୍ତ କରିପାରୁ ନାହିଁ । ସୁତରାଂ ଆମ୍ଭମାନଙ୍କର ସମୟ ନଷ୍ଟ ଅନିର୍ବାର୍ଯ୍ୟ । ଆମ୍ଭମାନଙ୍କ ଅଧଃପତନର ଦ୍ୱିତୀୟ କାରଣ ଅମ୍ଭେମାନେ ବିଳାସୀ ହେବାରୁ ଅନାବଶ୍ୟକ ବ୍ୟୟହିଁ ଆମ୍ଭମାନଙ୍କର ଅଧିକ । ଏହାର ପ୍ରଧାନ ହେତୁ ଅମ୍ଭେମାନେ ବାସ୍ତବିକ ହିଁ ଅବସ୍ଥାର ବାହାରକୁ ସର୍ବଦା ଅଗ୍ରସର ହେଉଁ, ଯାହା ମୁଁ ନୁହେଁ, ତାହା ମୁଁ ସର୍ବଦା ଦେଖାଇବାକୁ ବ୍ୟସ୍ତ । "ଷ୍ଟାଇଲ ଚଳନ" କିମ୍ବା "ଢପ" ନାମକ ଗୋଟିଏ ଘୃଣିତ ଅଗ୍ନିର ବ୍ୟବହାର ଆମ୍ଭମାନଙ୍କ ମଧ୍ୟରୁ ପ୍ରତ୍ୟେକ ଲୋକଙ୍କ ମଧ୍ୟରେ ମଜ୍ଜାଗତ ହୋଇ ରହିଅଛି । ସୁତରାଂ ସଞ୍ଚୟ ନାମକ ପଦାର୍ଥକୁ ଅମ୍ଭେମାନେ ବାସ୍ତବିକ ଉପେକ୍ଷା ଦୃଷ୍ଟିରେ ଦେଖିଥାଉଁ । ଏହା ଗୋଟିଏ ରୋଗ ବିଶେଷ । ଏହି ରୋଗର ପ୍ରତିବିଧାନ କଲେ, କ୍ଷୁଦ୍ର ଆୟରେ ମଧ୍ୟ ଅମ୍ଭେମାନେ ପୁଣି ଲକ୍ଷ୍ମୀଲାଭ କରି ନିଜର ତଥା ଦଶଜଣର ଉପକାର କରିବାକୁ କ୍ଷମ ହେବୁ । କିନ୍ତୁ ଅମ୍ଭେମାନେ କ୍ଷୁଦ୍ର ବିଷୟରେ କିମ୍ବା କ୍ଷୁଦ୍ର ସଞ୍ଚୟରେ ଆଦୌ ସତର୍କତା ଅବଲମ୍ବନ କରିବାକୁ ଶିକ୍ଷା ପାଇନାହୁଁ । କ୍ଷୁଦ୍ର ବାଲୁକା କଣା ଠାରୁ ଯେ ବୃହତ୍ ଗିରିଶୃଙ୍ଗର ସୃଜନା, ବିନ୍ଦୁ ବିନ୍ଦୁ ଜଳରୁ ଯେ ସରିତ୍‌ଶାଖାର ଉତ୍ପତ୍ତି ହୋଇ ମହାନଦୀର ସୃଷ୍ଟି ହୋଇଅଛି, ଏହା ଅମ୍ଭେମାନେ ଅହରହିଁ ଦେଖି କ୍ଷୁଦ୍ରକୁ ଉପେକ୍ଷା କରି ଅଧଃପାତ ଆଡ଼କୁ ଅଗ୍ରସର ହେଉଁ । କେବଳ ଏହା ନୁହେ, ଆର୍ଯ୍ୟ ମନୀଷୀବର୍ଗ ଯେ ଉଦ୍ୟୋଗୀହିଁ ପୁରୁଷ ସିଂହ ଏହି ମହାବାକ୍ୟ ଶିକ୍ଷା ଦେଇଅଛନ୍ତି । ଅମ୍ଭେମାନେ ଆଜି ପାଶ୍ଚାତ୍ୟ ଶିକ୍ଷିତ ହୋଇ ତହିଁରେ ଅନାସ୍ଥା ପ୍ରଦର୍ଶନ କରୁଅଛୁ । କିନ୍ତୁ ପାଶ୍ଚାତ୍ୟ ପଣ୍ଡିତମାନେ ଆମ୍ଭମାନଙ୍କ ଭଳି କେବଳ ଅଦୃଷ୍ଟର ହାହି ଦିଅନ୍ତି ନାହିଁ । ଯେତେବେଳେ ଅର୍ଥ ଏବଂ ଉଦ୍ୟୋଗର କଥା

କୌଣସି ସ୍ଥାନରେ ପଡ଼ିଯାଏ, ସେହି ନ୍ୟାଯ୍ୟ କଥାର କଷାଘାତରୁ ଆତ୍ମରକ୍ଷାର କୌଣସି ପ୍ରକୃଷ୍ଟ କୈଫିୟତ୍ ଦେବାକୁ ଅସମର୍ଥ ହୋଇ ଅଦୃଷ୍ଟର ଦ୍ୱାହି ଦେବାକୁ ବାଧ୍ୟ ହେଉଁ—କେବଳ କହୁଥାଉଁ—ଧନ ଓ ଯଶ ଅଦୃଷ୍ଟ ସାପେକ୍ଷ । ପାଶ୍ଚାତ୍ୟ ଶିକ୍ଷିତ ବୋଲି ଅହଙ୍କାର କରି ସୁଦ୍ଧା ସେହି ପାଶ୍ଚାତ୍ୟ ନୀତିରେ ଆମ୍ଭେମାନେ ସାଧାରଣତଃ ଅନାସ୍ଥା ପ୍ରଦର୍ଶନ କରିଥାଉଁ । ଆମେରିକାର ପ୍ରସିଦ୍ଧ ଧନୀ ରକ୍‌ଫେଲର **(Rock feller)** କହିଥିଲେ **"It is not luck, but labour makes man"**—ଅର୍ଥାତ୍ ପରିଶ୍ରମରେହିଁ ମନୁଷ୍ୟ ପ୍ରସ୍ତୁତ ହୋଇଥାଏ, କେବଳ ଭାଗ୍ୟରେ ନୁହେଁ । ସେ ଅନ୍ୟତ୍ର କହିଅଛନ୍ତି **"Luck is our waiting for something to turn up, but labour with keen eye and strong will always turn up something"** । ଅଦୃଷ୍ଟବାଦୀ ଆଶାର ଆଶାରେ ବସିଥାଏ, କୌଣସି ସେ ଭଲ ସୁଯୋଗ ଯେବେ ଘଟିଯାଏ ତାହାହେଲେ କିଛି ପାଇବ, କିନ୍ତୁ ଶ୍ରମଶୀଳ ବ୍ୟକ୍ତି ସର୍ବଦା କିଛି କରି କିଛି ପାଇବାର ଆଶାରେ ନିଶ୍ଚିତ ରହିଥାଏ । ଶ୍ରମ ମନୁଷ୍ୟକୁ ନିଶ୍ଚିତ ପ୍ରାପ୍ତ୍ୟାଶାକୁ ଘେନିଯାଏ, କିନ୍ତୁ ଅଦୃଷ୍ଟର ସାଧକ ଆଶାରେ ନିଶ୍ଚେଷ୍ଟ ଓ ଅକର୍ମଣ୍ୟ ହୋଇ ହତାଶାର କରାଳ ଗ୍ରାସରେ ଆତ୍ମ ସମର୍ପଣ କରିବାକୁ ବାଧ୍ୟ ହୋଇଥାଏ । ଆମ୍ଭେମାନେ ପ୍ରତୀଚ୍ୟ ଓ ପ୍ରାଚ୍ୟ କୌଣସି ଆଡ଼ର ଏହି ସମସ୍ତ ମହାବାକ୍ୟରେ ଯେବେ ଆସ୍ଥାବାନ ହୋଇଥାଆନ୍ତୁ ତାହାହେଲେ ଆମ୍ଭମାନଙ୍କର ଲକ୍ଷ୍ମୀ ନିତ୍ୟ କରାୟତ୍ତ ହୋଇଥାଆନ୍ତା ।

କ୍ଷୁଦ୍ର ବିଷୟର ଉପେକ୍ଷାରେହିଁ ବଡ଼ ବଡ଼ ସର୍ବନାଶ ଉପସ୍ଥିତ ହୋଇଥାଏ । କୌଣସି ଯୁଦ୍ଧର ସେନାପତିଙ୍କ ଶରୀର ରକ୍ଷକ ଯେତେବେଳେ ଶିବିରରୁ ରଣକ୍ଷେତ୍ର ଆଡ଼କୁ ଅଗ୍ରସର ହେଲେ

ସେତେବେଳେ ଦେଖିଲେ ଯେ ତାହାଙ୍କର ଅଶ୍ୱର ଖୁରର ନାଲରୁ ଗୋଟିଏ ଲୁହା କଣ୍ଟା ଖୋଲି ଯାଇଅଛି, ଗୋଟିଏ ଲୁହା କଣ୍ଟା ବୋଲି ତାହାକୁ ଉପେକ୍ଷା କରି ସେନାପତିଙ୍କ ସମ୍ମୁଖୀନ ହେଲେ । ସେନାପତି ତତ୍‌କ୍ଷଣାତ୍ ତାହାଙ୍କ ଆଦେଶ ଅନ୍ୟ ସେନାନୀଙ୍କ ନିକଟକୁ ପ୍ରେରଣ କରିବା ନିମିତ୍ତ ସେହି ଶରୀର ରକ୍ଷକଙ୍କୁ ଆଦେଶ ଦେଲେ । ମୁହୂର୍ତ୍ତି ମଧ୍ୟରେ ସେ ସେନାପତିଙ୍କ ଆଦେଶ ଘେନି ଅତି ବେଗରେ ଅଶ୍ୱ ଚଲାଇ ଦେଲେ, ମାତ୍ର ଅଶ୍ୱର ନାଲି ଖସିଯିବାରୁ ଅଶ୍ୱ ଅକର୍ମଣ୍ୟ ହୋଇ ଧାଇଁ ପାରିଲା ନାହିଁ । ଏହି ସମୟରେ ଶତ୍ରୁ ପକ୍ଷର ସେନାପତି ସେହି ସମ୍ବାଦ ବାହକକୁ ଆକ୍ରମଣ କରିବା ସଙ୍କାଶେ ତୂର୍ଯ୍ୟଧ୍ୱନି କଲେ, ମୁହୂର୍ତ୍ତି ମଧ୍ୟରେ ଅଗ୍ନିମୟ ଗୋଲିଘାତରେ ଅଶ୍ୱ ଭୂତଳଶାୟୀ ହେଲା । ସେତେବେଳେ ସମ୍ବାଦ ବାହକ ସେନାପତିର ଶରୀର ରକ୍ଷକ ସ୍ୱକୃତ ଭ୍ରମ ସଙ୍କାଶେ ହାୟ ହାୟ କଲେ, କିନ୍ତୁ ଅବିଳମ୍ବରେ ଶତ୍ରୁ ପରିବେଷ୍ଟିତ ହୋଇ ବନ୍ଦୀ ହେଲେ । ଅଶ୍ୱର ଏଭଳି ଶୋଚନୀୟ ଅବସ୍ଥା ଘଟି ନ ଥିଲେ ସେ ସ୍ୱପକ୍ଷ ମଧ୍ୟରେ ଅନାୟାସରେ ଉପସ୍ଥିତ ହୋଇ ତାହାଙ୍କ ସେନାପତିର ଆଦେଶ ଜ୍ଞାପନ କରିଥିଲେ ସେହି ଯୁଦ୍ଧରେ ସେମାନେ ଜୟୀ ହୋଇଥାନ୍ତେ, କିନ୍ତୁ ଶତ୍ରୁପକ୍ଷ ତାହାଙ୍କର କୁର୍ଣ୍ଣ ପକେଟରୁ ସେମାନଙ୍କ ବିପକ୍ଷ ସେନାପତିର କୂଟ ଆକ୍ରମଣ ତଥ୍ୟ ପ୍ରଥମରୁ ଜ୍ଞାତ ହୋଇ ଅବିଳମ୍ବରେ ବିଜୟ ଲକ୍ଷ୍ମୀ ଲାଭ କରି ପକାଇଲା । ଗୋଟିଏ ଅତି କ୍ଷୁଦ୍ର ଲୁହା କଣ୍ଟାପ୍ରତି ଉପେକ୍ଷା ପ୍ରଦର୍ଶନହିଁ ଯୁଦ୍ଧରେ ପରାଜୟର କାରଣ ହେଲା । ଏଭଳି କେତେ ଲୋକ ଯେ ପ୍ରତ୍ୟହ କ୍ଷୁଦ୍ରକୁ ଉପେକ୍ଷାକରି ଧ୍ୱଂସ ମୁଖରେ ପଡ଼ିଅଛନ୍ତି ତାହାର ଇୟତ୍ତା କରିବା କଠିନ । ଇଂରେଜ ନୀତିଜ୍ଞ କହିଅଛନ୍ତି—"Neglect of little things has ruined many fortune and

marred the best enterprisers ।" ଅମ୍ଭେମାନେ କ୍ଷୁଦ୍ର ବ୍ୟୟରେ ଉପେକ୍ଷା କରି ଶଙ୍କଟମୟ ଦାରିଦ୍ର୍ୟର କରାଳ ଗ୍ରାସରେ ଆତ୍ମ ସମର୍ପଣ କରିବାକୁ ବାଧ୍ୟ ହୋଇଅଛୁଁ । ଅମ୍ଭମାନଙ୍କ ନିକଟରେ ସଞ୍ଚୟର ପ୍ରକୃତ ଆଦର ନାହିଁ, ଏହି ହେତୁରୁ ଜଗତର ସର୍ବ ଜାତି ଅପେକ୍ଷା ଅମ୍ଭେମାନେ ଦରିଦ୍ର । ଏହି ଦରିଦ୍ରତା ଫଳରୁ ଅମ୍ଭେମାନେ ବୀରତ୍ୱ, ମନୁଷ୍ୟତ୍ୱ, କାର୍ଯ୍ୟ ତତ୍ପରତା ଏବଂ ବୈଷୟିକ ଜ୍ଞାନ ପ୍ରଭୃତି ସମସ୍ତ ହରାଇ ଦେଇ ବଚନ-ବୀରରେ ପରିଣତ ହୋଇଅଛୁଁ । ଏଥିରୁ ପରିତ୍ରାଣର ଉପାୟ—ବିଳାସ ବାସନା ପରିତ୍ୟାଗ କରି ସଞ୍ଚୟର ଆକାଙ୍କ୍ଷାକୁ ଯେପରି ହେଉ ଉତ୍ତେଜିତ କରି ଅର୍ଥଶାଳୀ ହେବାକୁ ହେବ । ଅର୍ଥଶାଳୀ ହେଲେ ଅମ୍ଭେମାନେ ଶିଳ୍ପ ବାଣିଜ୍ୟର ଗୌରବ ବୁଝିବାକୁ ସମର୍ଥ ହେବୁଁ । ବର୍ତ୍ତମାନ କାଳରେ ଉଦ୍ୟୋଗୀ ଜାତି ସମୂହର ଦୁର୍ବହ ପ୍ରତିଦ୍ୱନ୍ଦୀତାର ପେଷଣୀ ଯନ୍ତ୍ର ମଧ୍ୟରୁ ପରିତ୍ରାଣର ଏକମାତ୍ର ଉପାୟ—ଅର୍ଥ ସଞ୍ଚୟ । ଅର୍ଥଶାଳୀ ହେଲେ ଅମ୍ଭେମାନେ ଉଦ୍ୟୋଗୀ ହେବୁଁ । ଏହି ହେତୁରୁ ଇଂରାଜୀ ନୀତିବାକ୍ୟ ସର୍ବଦା ସ୍ମରଣ ରଖିବାହିଁ ଉଚିତ—"If you take care of the pennies, pounds will come out themselves"-- ଅର୍ଥାତ୍ ତୁମ୍ଭେ ପଇସା ପ୍ରତି ଯତ୍ନବାନ ହେଲେ ଟଙ୍କା ସବୁ ଆପେ ଆପେ ପହଞ୍ଚିଯିବ । ଆଉ ଗୋଟିଏ କଥା—"It is not what we earn but what we save that makes us rich" ଅର୍ଥାତ୍ କେବଳ ଉପାର୍ଜ୍ଜନହିଁ ଧନଶାଳୀ ହେବାର ଉପାୟ ନୁହେ, ଅର୍ଥ ସଞ୍ଚୟହିଁ ଧନଶାଳୀ ହେବାର ପ୍ରକୃଷ୍ଟ ଉପାୟ ।

---

# ଉଚ୍ଛୃଙ୍ଖଳତା

ମନ ନିୟନ୍ତ୍ରିତ ନ ହେବାରୁ ଉଚ୍ଛୃଙ୍ଖଳତାର ଉତ୍ପତ୍ତି । ଯହିଁରେ ମନ ନିୟନ୍ତ୍ରିତ ହୁଏ ତାହାର ଚେଷ୍ଟାକଲେ ଉଚ୍ଛୃଙ୍ଖଳତାର ହ୍ରାସ ନିଶ୍ଚିତ । କୌଣସି ବ୍ରତ କିମ୍ବା କେତେଗୁଡ଼ିଏ ନିୟମ ଅବଲମ୍ବନ କରି ଅକ୍ଷୁଣ୍ଣ ଭାବରେ ତାହା ରକ୍ଷା କରିବା ସକାଶେ ଅନବରତ ଚେଷ୍ଟା କରିବାହିଁ ମନ ନିୟନ୍ତ୍ରିତ କରିବାର ପ୍ରଧାନ ଉପାୟ । ପ୍ରତ୍ୟହ କେଉଁ ସମୟରେ କି କାର୍ଯ୍ୟ କେତେକ୍ଷଣ କିରୂପେ କରିବାକୁ ହେବ ସ୍ଥିରକରି କିଛିକାଳ ସେହି ନିୟମଗୁଡ଼ିକ ଅବିଚଳିତ ଭାବରେ ରକ୍ଷାକଲେ ମନ ସଂଯତ ହେବ, ଉଚ୍ଛୃଙ୍ଖଳତା ଦୂରହେବ । ଯେତେବେଳେ ଯାହା ମନେ ହେଲା ତାହା କଲି, କୌଣସି କାର୍ଯ୍ୟ କରିବା ସକାଶେ ଗୋଟିଏ ସମୟ ନିର୍ଦ୍ଦିଷ୍ଟ କରିଥିଲି—କିନ୍ତୁ ଅପର କୌଣସି କାର୍ଯ୍ୟାନୁରୋଧରୁ ତାହା ଅବହେଳା କଲି, କେଉଁ ସମୟରେ କେଉଁ କାର୍ଯ୍ୟ କରିବି ତାହାର ସ୍ଥିରତା ନାହିଁ, ଏଭଳି ଭାବରେ ଯେଉଁମାନେ ଜୀବନ ଯାପନ କରନ୍ତି, ସେମାନଙ୍କର ଉଚ୍ଛୃଙ୍ଖଳତା ଦୂର ହେବାହିଁ କଠିଣ । ଦୈନିକ କାର୍ଯ୍ୟ ପ୍ରଣାଳୀ ନିର୍ଦ୍ଧାରଣ କରି ଅକ୍ଷତ ଭାବରେ ତାହା ପାଳନ କରିବା ନିତାନ୍ତ ପ୍ରୟୋଜନ । କର୍ତ୍ତବ୍ୟ ସାଧନର ନିର୍ଦ୍ଦିଷ୍ଟ ସମୟରେ ତାହା କରିବାକୁ ହେବ ଏହିଭାବ ସର୍ବଦା ମନରେ ଜାଗ୍ରତ ରଖିବା ଉଚିତ । ଅଦ୍ୟ ରାତ୍ରି ୮ଟା ବେଳେ ମୋର କୌଣସି ଗୋଟିଏ ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବାକୁ ହେବ, ମାତ୍ର ସନ୍ଧ୍ୟା ୭ଟା ବେଳଠାରୁ କୌଣସି ସଙ୍କୀର୍ତ୍ତନରେ ଏଭଳି ଉନ୍ମତ୍ତ ହୋଇଗଲି ଯେ ରାତ୍ରୀ ୮ଟା ସମୟରେ ସେ କାର୍ଯ୍ୟ ସମ୍ପନ୍ନ ନୋହିଲା—ଏହା ଅପେକ୍ଷା ଉଚ୍ଛୃଙ୍ଖଳତା ବର୍ଦ୍ଧକ ଆଉ କିଛିହିଁ ନାହିଁ । ସଙ୍କୀର୍ତ୍ତନରେ ଉନ୍ମତ୍ତ ହୋଇ ନିଜର କର୍ତ୍ତବ୍ୟ

ବିସ୍ମୃତ ହେବା ବାଞ୍ଛନୀୟ ନୁହେ । କେହି କେହି କହିବେ "ସଙ୍କୀର୍ତ୍ତନରେ ଭଗବାନଙ୍କର ନାମ ଉଚ୍ଚାରଣ କରିବାଠାରୁ ତୁମ୍ଭର କର୍ତ୍ତବ୍ୟ ସାଧନ କଅଣ ଗୁରୁତର ହେଲା ?" ସେଠାରେ ଏହି ଉତ୍ତର ସଙ୍ଗତ ଯେ "କର୍ତ୍ତବ୍ୟ ସାଧନ ମଧ୍ୟ ଭଗବଦ୍ ମହିମା ପ୍ରଚୁର ।"

ଉଚ୍ଛୃଙ୍ଖଳତାର ଗୋଟିଏ ପ୍ରଧାନ କାରଣ ନିରଙ୍କୁଶ ଭାବରେ ବିହାର । ଯେଉଁମାନଙ୍କର କେହି ନେତା ଓ ଶାସ୍ତା ନାହାନ୍ତି ସେମାନେହିଁ ସମଧିକ ଉଚ୍ଛୃଙ୍ଖଳ ହୋଇଥାଆନ୍ତି । ଏହି ହେତୁରୁ କୌଣସି ଭକ୍ତିଭାଜନ ଶ୍ରେଷ୍ଠ ବ୍ୟକ୍ତିଙ୍କର ଆଦେଶାନୁସାରେ ଚଳିବାହିଁ ଉଚ୍ଛୃଙ୍ଖଳତା ନାଶର ଗୋଟିଏ ପ୍ରଧାନ ଉପାୟ । ସୈନିକ ଯେପରି ସୈନ୍ୟାଧ୍ୟକ୍ଷଙ୍କର ଆଦେଶର ସମ୍ପୂର୍ଣ୍ଣ ଅଧୀନ ରହିଥାଆନ୍ତି, ତାହାର ବିନ୍ଦୁମାତ୍ର ବ୍ୟତିକ୍ରମ କରେନାହିଁ, ସେହିପରି କୌଣସି ଶ୍ରେଷ୍ଠ ବ୍ୟକ୍ତିଙ୍କର ଆଜ୍ଞାଧୀନ ହୋଇ ସର୍ବଦା ତାହାଙ୍କର ଆଦେଶାନୁସାରେ କାର୍ଯ୍ୟକଲେ ଉଚ୍ଛୃଙ୍ଖଳତା କମିଯିବ । ସ୍ୱେଚ୍ଛାଚାରର ଦମନହିଁ ଏକାନ୍ତ ଆବଶ୍ୟକ ।

ଏହି ସୌରଜଗତ କିପରି ବିଧି ନିର୍ଦ୍ଦିଷ୍ଟ ନିୟମାଧୀନ ରହି ଶୃଙ୍ଖଳ ଭାବରେ ଚାଲୁଅଛି ଏହା ଚିନ୍ତାକଲେ ଉଚ୍ଛୃଙ୍ଖଳ ଜୀବନ ନିୟମିତ ହୋଇଥାଏ । ଚତୁର୍ଦ୍ଦିଗରେ ଏହି ପ୍ରକାଣ୍ଡ ବିଶ୍ୱ କି ସୁନ୍ଦର ଓ ଶୃଙ୍ଖଳ ଭାବରେ ଚାଲୁଅଛି; ପ୍ରତ୍ୟହ ନିର୍ଦ୍ଦିଷ୍ଟ ସମୟରେ ସୂର୍ଯ୍ୟ ଉଦୟ ହୋଇ ଅସ୍ତ ଯାଉଅଛନ୍ତି । ଚନ୍ଦ୍ରର ଷୋହଳକଳା ନିର୍ଦ୍ଦିଷ୍ଟ ନିୟମାନୁସାରେ ବୃଦ୍ଧି ଓ କ୍ଷୟ ପାଉଅଛି । ଅନ୍ୟାନ୍ୟ ଗ୍ରହ ନକ୍ଷତ୍ରାଦି ଯାହାର ଯେଉଁଦିନ ଯେଉଁ ଭାବରେ ଯେତେଟିକି ଚଳିବାର ନିୟମ ସେ ସେହିଦିନ ସେତେଟିକି ଚଳୁଅଛି; ଗ୍ରୀଷ୍ମ, ବର୍ଷା, ଶରତ୍, ହେମନ୍ତ, ଶୀତ, ବସନ୍ତ ଛଅ ଋତୁ ନିର୍ଦ୍ଦିଷ୍ଟ ଚକ୍ରରେ ବୁଲୁଅଛି, ଅଗ୍ନି ନିର୍ଦ୍ଦିଷ୍ଟ ନିୟମରେ ତାପ ଦେଉଅଛି, ବାୟୁ ନିର୍ଦ୍ଦିଷ୍ଟ ନିୟମରେ ବହୁଅଛି,

ମେଘ ନିର୍ଦ୍ଦିଷ୍ଟ ନିୟମରେ ସଞ୍ଚାରିତ ହେଉଅଛି—ଏହା ଜାଣିକଲେ ନିର୍ଦ୍ଦିଷ୍ଟ ନିୟମ ତ୍ୟାଗ କରି କର୍ଣ୍ଣହୀନ ତରଣୀ ଭଳି କିଏ ନିଜର ଜୀବନକୁ ଉଚ୍ଛୃଙ୍ଖଳ କରିବ ? ଯେ କିଛିମାତ୍ର ଅନୁଧାବନ କରନ୍ତି ସେ ଦେଖନ୍ତି ସମସ୍ତ ବ୍ରହ୍ମାଣ୍ଡମୟ ଗୋଟିଏ ସୁନ୍ଦର ବିଧି କାର୍ଯ୍ୟ କରୁଅଛି । ସେହି ବିଧି ନିକଟରେ ମସ୍ତକ ଅବନତ କରି ଯେ ନିଜର ଜୀବନ ନିୟମିତ କରନ୍ତି ସେ ଭାଗ୍ୟବାନ; ତାହାଙ୍କର ଯେତିକି ବୟସ ବୃଦ୍ଧି ହୁଏ, ସେ ସେହିପରି ମାର୍ଗରେ ଆନନ୍ଦ ସଞ୍ଚୟ କରୁଥାଆନ୍ତି । ଯେ ଏହା ନ ଦେଖି ତରଙ୍ଗତାଡ଼ିତକାଷ୍ଠଖଣ୍ଡ ଭଳି ନିଜର ଜୀବନ ଉଚ୍ଛୃଙ୍ଖଳ କରି ପକାନ୍ତି, ସେ ହତଭାଗ୍ୟ, ତାହାଙ୍କର ଯେତେ ବୟସ ବୃଦ୍ଧି ହୁଏ ସେହି ପରିମାଣରେ ସେ ଅନୁତାପାନଳରେ ଦଗ୍ଧ ହେଉ ଥାଆନ୍ତି ଏବଂ ଭବିଷ୍ୟତ ଅନ୍ଧକାର ଦେଖି ହତାଶ ହୁଅନ୍ତି । ସମସ୍ତେ ଉଚ୍ଛୃଙ୍ଖଳତା ଦୂରକରି ଜୀବନର ଉଦ୍ଦେଶ୍ୟ ସାଧନରେ ବ୍ରତୀ ହେବାହିଁ ସର୍ବତୋଭାବରେ କର୍ତ୍ତବ୍ୟ ।

---

## ଆମୋଦରେ ସଂଯମ

ପୃଥିବୀ ମନୁଷ୍ୟର କର୍ମକ୍ଷେତ୍ର । କର୍ମ ନ କରି ମନୁଷ୍ୟ ରହି ପାରେ ନାହିଁ । ଜୀବନ ରକ୍ଷା ପାଇଁ ଯାହା ଆବଶ୍ୟକ କର୍ମବ୍ୟତୀତ ତାହା ମିଳେ ନାହିଁ । କ୍ଷୁଧା ସକାଶେ ଅନ୍ନ, ତୃଷ୍ଣାରେ ଜଳ, ବାସ ସକାଶେ ଗୃହ, ପରିଧାନରେ ବସ୍ତ୍ର, ରୋଗରେ ଔଷଧ—ଏହି ସମସ୍ତ କର୍ମଦ୍ୱାରା ଲଭ୍ୟ ହୁଏ । ମନୁଷ୍ୟର ଅନ୍ୟରୂପ ପ୍ରୟୋଜନ ମଧ୍ୟ ଅନେକ । ଜ୍ଞାନୋପାର୍ଜ୍ଜନ, ବିଦ୍ୟୋପାର୍ଜ୍ଜନ, ଅର୍ଥୋପାର୍ଜ୍ଜନ, ସ୍ୱାର୍ଥ ସାଧନ, ପରାର୍ଥସାଧନ, ଧର୍ମସାଧନ—ଏଭଳି ଅନେକ ପ୍ରୟୋଜନ ରହିଅଛି । ଏହି ସମସ୍ତ କର୍ମ—କର୍ମ ବ୍ୟତୀତ ଏଥିରୁ କିଛିହିଁ ସିଦ୍ଧ

ହୁଏ ନାହିଁ । ଅଖି ବୁଜି ବସିରହିଥିଲେ ଏଥିରୁ କିଛିହିଁ ସିଦ୍ଧ ହେବ ନାହିଁ । କେବଳ ଏତିକି ନୁହେଁ । ପ୍ରାଣପଣରେ କର୍ମ ନ କଲେ କର୍ମ ନିଷ୍ଫଳ ହୁଏ । କର୍ମରେ ଏକାଗ୍ରତା, ଅଧ୍ୟବସାୟ, ଶାରୀରିକ ଓ ମାନସିକ ଉଭୟବିଧ ଶ୍ରମ ଆବଶ୍ୟକ । ଏତେ ପରିଶ୍ରମ ଆବଶ୍ୟକ ଯେ ମନୁଷ୍ୟକୁ ଶ୍ରାନ୍ତ, କ୍ଳାନ୍ତ, ଅବସନ୍ନ ହୋଇ ପଡ଼ିବାକୁ ହୁଏ । ସେତେବେଳେ ଶରୀର ଓ ମନରେ ନୂତନ ବଳ ସଞ୍ଚାରିତ କରି ନ ପାରିଲେ ଏ ଉଭୟହିଁ ଭାଙ୍ଗିଯାଏ ଏବଂ କଠିନ ରୋଗରେ ଆକ୍ରାନ୍ତ ହେବାକୁ ହୁଏ ଏବଂ ହୁଏତ ଅକାଳ ମୃତ୍ୟୁ ଘଟିଥାଏ । ଆହାରରେ ଶରୀର କ୍ଷୟର ପୂରଣ ହୁଏ––ଶରୀରର ଶ୍ରାନ୍ତି ମଧ୍ୟ ଦୂର ହୁଏ । ଶରୀର ଶ୍ରାନ୍ତି ଦୂର ହେଲେ ମନର ଶ୍ରାନ୍ତିର ମଧ୍ୟ ଉପଶମ ହୁଏ । କିନ୍ତୁ ମନର ଅବସାଦ ଦୂର କରିବାର ଶ୍ରେଷ୍ଠ ଉପାୟ ରହିଅଛି । ସେ ଉପାୟ ଆମୋଦ । ସମସ୍ତଦିନ କର୍ମ ସ୍ଥାନରେ କଠିଣ ପରିଶ୍ରମରେ ଅବସନ୍ନ ହୋଇ ଗୃହରେ ପହଞ୍ଚି ସ୍ନେହ ଓ ଭକ୍ତିର ପାତ୍ର ଗୃହକୁ ନେଇ ଦୁଇଦଣ୍ଡ ବସିରହିଲେ ମନର ଅବସାଦ ଦୂର ହୋଇଯାଏ । ସେତେବେଳେ ମନ ପ୍ରଫୁଲ୍ଲ ହୋଇ ଉଠେ—ସଙ୍ଗେ ସଙ୍ଗେ ଶରୀର ମଧ୍ୟ ସୁସ୍ଥ ଓ ସବଳ ହୁଏ ।

ଇଂଲଣ୍ଡର ଭୂତପୂର୍ବ ପ୍ରଧାନ ମନ୍ତ୍ରୀ ଗ୍ଲାଡଷ୍ଟୋନ କର୍ମର ଅବତାର ଥିଲେ—ସମଗ୍ର ବ୍ରିଟିଶ ରାଜ୍ୟର କର୍ଣ୍ଣଧାର ରୂପେ ତାହାଙ୍କୁ କେତେ କାର୍ଯ୍ୟ କରିବାକୁ ହେଉଥିଲା, କେତେ ଭାବୁଥିଲେ ଓ ଚିନ୍ତା କରୁଥିଲେ ତାହାର ଇୟତ୍ତା କରିବା କଠିଣ । ଏତେବଡ଼ ବିଚକ୍ଷଣ ରାଜମନ୍ତ୍ରୀ ଜଗତରେ ଦୁର୍ଲ୍ଲଭ । କିନ୍ତୁ ସେ ସମୟ ସମୟରେ ଗୋଟିଏ ଘରର ଦ୍ୱାର ଓ ଝରକା ବନ୍ଦ କରିଦେଇ ତନ୍ମଧ୍ୟରେ ଘୋଡ଼ା ହେଉଥିଲେ ଏବଂ ତାହାଙ୍କ ନାତି ଓ ନାତୁଣୀମାନେ ତାହାଙ୍କ ପିଠି ଉପରେ ବସୁଥିଲେ, ସେ ସେମାନଙ୍କୁ ବୋହି ସମସ୍ତ

ଘର ମଧ୍ୟରେ ଧାଇଁ ବୁଲୁଥିଲେ । ଏଡ଼େ ବଡ଼ ବ୍ୟକ୍ତି ପିଲମାନଙ୍କ ସହିତ ପିଲ ହୋଇ ପିଲଖେଳ କରୁଥିଲେ । ମନୁଷ୍ୟ ଅମର, ଅକ୍ଷୟ ଓ ଅବ୍ୟୟ ନୁହେ । ଶକ୍ତିର ପ୍ରୟୋଗରେ ମନୁଷ୍ୟର ଶକ୍ତି ନାଶ ହୁଏ, ବଳବାନ୍‌ପ୍ରୟୋଗରେ ମନୁଷ୍ୟର ବଳ କ୍ଷୟ ହୁଏ; ସୁତରାଂ ଶ୍ରମରେ ମନୁଷ୍ୟର ଶ୍ରାନ୍ତି ହୁଏ । ଅତଏବ ଶ୍ରମ ଉତ୍ତାରୁ ବିଶ୍ରାମ ଆବଶ୍ୟକ । ବିଶ୍ରାମ କହିଲେ କେବଳ ତୁନି ହୋଇ ବସି ଅଥବା ଶୋଇ ରହିବା ବୁଝାଏ ନାହିଁ । ଯେଉଁ କାର୍ଯ୍ୟ କରି ଶ୍ରାନ୍ତି ହୁଏ ତାହା ଛାଡ଼ ଲଘୁତର କିମ୍ବା ଭିନ୍ନ ପ୍ରକୃତିର କାର୍ଯ୍ୟ କଲେ ମଧ୍ୟ ବିଶ୍ରାମ ହୋଇଥାଏ । ଗ୍ଲାଡ୍‌ଷ୍ଟୋନ କଠିଣ ରାଜକାର୍ଯ୍ୟରେ କ୍ଲାନ୍ତ ହୋଇ ପିଲମାନଙ୍କ ସଙ୍ଗରେ ଘୋଡ଼ା ଖେଳ ଖେଳି ବିଶ୍ରାମ ଲାଭ କରୁଥିଲେ । ବୋଧହୁଏ ଇଂରାଜ ଭଳି ଆଉ କେହି ଶ୍ରମ କରନ୍ତି ନାହିଁ । ଆମ୍ଭେମାନେ ସର୍ବଦା ଦେଖୁଁ କଚେରିରେ ଅସୁର ଭଳି ଖଟି ଖଟି ଅନେକ ଇଂରାଜ କ୍ରୀଡ଼ା ଭୂମିରେ କ୍ରୀଡ଼ାକରି ଗୃହ ପ୍ରତ୍ୟାଗତ ହୋଇ ଥାଆନ୍ତି । ଇଂରାଜ ଭଳି ଖେଳାଳି ଜାତି ପୃଥିବୀରେ ବଡ଼ କମ୍ ।

ଯେଉଁଠାରେ ଶ୍ରମ, ସେଠାରେ ବିଶ୍ରାମର ପ୍ରୟୋଜନ, ଯେଉଁଠାରେ କର୍ମ ସେଠାରେ ଆମୋଦ ଆବଶ୍ୟକ । ଆମୋଦ ବୋଲି ଗୋଟିଏ ସ୍ୱତନ୍ତ୍ର ସାମଗ୍ରୀ ନାହିଁ । ଆମୋଦ କର୍ମରହିଁ ଅଂଶ—କର୍ମରହିଁ ଅନ୍ତର୍ଗତ । ଯେଉଁମାନଙ୍କର କର୍ମ ନାହିଁ ସେମାନଙ୍କର ଆମୋଦର ପ୍ରୟୋଜନ ନାହିଁ, ସୁତରାଂ ଆମୋଦରେ ଅଧିକାର ମଧ୍ୟ ନାହିଁ । ଆମୋଦରେ ସେମାନଙ୍କର ଅନିଷ୍ଟ ବ୍ୟତୀତ ଆଉ କିଛି ହୋଇ ନ ପାରେ । ମନୁଷ୍ୟୋଚିତ କର୍ମ ନ କରି, କର୍ମ କରିବାକୁ ଅସମର୍ଥ ହୋଇ ବସି ବସି କେବଳ ଆମୋଦ ଆହ୍ଲାଦରେ ଦିନ କଟାଇବା ସର୍ବପ୍ରକାର ଅଧୋଗତି, ସର୍ବପ୍ରକାର ସର୍ବନାଶ ସାଧନର ଅବ୍ୟର୍ଥ ଉପାୟ । ଆମ୍ଭେମାନେ ବ୍ୟବସାୟ ବାଣିଜ୍ୟ

କରିପାରୁ ନାହିଁ, କଳ କାରଖାନା ଚଳାଇ ପାରୁନାହିଁ, ପୂର୍ବ ପୁରୁଷର ସମ୍ପତ୍ତି ପାଇ ତାହା ଉଡ଼ାଇ ଦେଉଁ, କେବଳ ସ୍କୁଲ୍ କଲେଜ କରି ପାରୁଁ—ପରୀକ୍ଷା ଦେବା ନିମିତ୍ତ । କିନ୍ତୁ ଦେଖୁଅଛୁଁ ଆମ୍ଭମାନଙ୍କର ଆମୋଦ୍ ବଢ଼ୁଅଛି । ଆମୋଦ ଆହ୍ଲାଦର ବିପୁଳ ଅନୁଷ୍ଠାନ ସର୍ବତ୍ର ହେଉଅଛି ।

ବାଳକ ଓ ଯୁବକମାନଙ୍କ ମଧ୍ୟରେ ଏକାଳରେ ଇୟାରକି ବୋଲି ଗୋଟିଏ ଦ୍ରବ୍ୟ ହୋଇଅଛି । ପୂର୍ବ କାଳରେ ଏହା ନ ଥିଲା । ବର୍ତ୍ତମାନ ସହର ଓ ପଲ୍ଲୀ ଗ୍ରାମ ସବୁ ସ୍ଥାନରେ ଏହା ଦେଖାଯାଏ । ପାଞ୍ଚଜଣ ସମବୟସ୍କ ପଢ଼ାଶୁଣା ତ୍ୟାଗକରି ଏକ ସ୍ଥାନରେ ଏକତ୍ର ହୋଇ ପାନ, ବିଡ଼ି ସିଗାରେଟ ଖାଆନ୍ତି, ବାଦ୍ୟ ବଜାନ୍ତି, ଗୀତ ଗାଆନ୍ତି, ହାସ୍ୟର ରୋଳ ଉଠାନ୍ତି, ଗଳ୍ପ କରନ୍ତି, ଲମ୍ବ ଲମ୍ବ ବକ୍ତୃତା କରନ୍ତି, ଆତ୍ମଗରିମାର ଆସ୍ଫାଳନ କରନ୍ତି, ସାନବଡ଼ ସମସ୍ତଙ୍କର ସମାଲୋଚନା କରନ୍ତି, ସମସ୍ତଙ୍କ ପ୍ରତି ତାଚ୍ଛଲ୍ୟ ପ୍ରକାଶ କରନ୍ତି । ଏଭଳି ଇୟାରର ଦଳ ଏ ଦେଶରେ ଅନେକ ହୋଇଅଛନ୍ତି । ଏଭଳି କରିବାକୁ ବର୍ତ୍ତମାନ ଅନେକଙ୍କର ଆମୋଦ । ଏଭଳି ବାଳକ କିମ୍ବା ଯୁବକମାନଙ୍କର ସମ୍ମାନାର୍ହ କିଛିହିଁ ନାହିଁ । ବିବାହ ପ୍ରଭୃତିର ସଭାରେ ବୟୋଜ୍ୟେଷ୍ଠମାନଙ୍କ ନିକଟରେ ଏମାନେ ସୁଶୀଳ କିମ୍ବା ସଂଯମଶୀଳ ବୋଲି ବିବେଚିତ ହୁଅନ୍ତି ନାହିଁ । ଶାନ୍ତ ଶିଷ୍ଟ ଭଳି ବସି ରହି ପାରନ୍ତି ନାହିଁ, ଅସ୍ଥିର ଉଦ୍ଧତ ଭାବରେ ଗୋଟିଏ ଦିଗକୁ ଯାଇ ହାସ୍ୟ ପରିହାସ ଓ ପାନବିଡ଼ି ସେବାରେ ଉନ୍ମତ୍ତ ହୋଇଉଠନ୍ତି । ବୟୋବୃଦ୍ଧମାନେ କୁଣ୍ଠିତ ହୋଇ ଏକପାର୍ଶ୍ୱକୁ ଘୁଞ୍ଚି ବସି ଥାଆନ୍ତି । ଆମୋଦ ପ୍ରିୟତା ଏମାନଙ୍କର ଏତେ ଅସ୍ଥିମଜ୍ଜାଗତ ଯେ ପ୍ରକାଶ୍ୟ ସଭାରେ ବୟୋଜ୍ୟେଷ୍ଠମାନଙ୍କ ନିକଟରେ ମଧ୍ୟ ଏମାନେ ଦୁଇଦଣ୍ଡ ସଂଯତ ହୋଇ ରହି ପାରନ୍ତି

ନାହିଁ । ଆମୋଦ ସକାଶେ ଏହି ଯେ ଗୋଟିଏ ଶୃଙ୍ଖଳା ଓ ଧୃଷ୍ଟତାର ଭାବ ସର୍ବସ୍ଵ ଜନ୍ମୁକି ଉଠୁଅଛି ଏହାର ବିନାଶ ସାଧନ ଏକାନ୍ତ ଆବଶ୍ୟକ । ଯେଉଁ ବାହ୍ୟ ବସ୍ତୁ ପ୍ରିୟତା କିମ୍ବା ବାହ୍ୟବସ୍ତୁର ମୋହ ଆହାର ଏବଂ ପରିଧାନ ପ୍ରଭୃତିରେ ଆମ୍ଭମାନଙ୍କର ଏତେ ଅସଂଯମର କାରଣ ହୋଇଅଛି ତାହାହିଁ ଆମ୍ଭମାନଙ୍କର ଏହି ଆମୋଦପ୍ରିୟତା ଏବଂ ଆମୋଦରେ ଅସଂଯମର କାରଣ ।

ଆମ୍ଭମାନଙ୍କର ଆମୋଦପ୍ରିୟତା ଏତେ ପ୍ରବଳ ହୋଇଅଛି, ଆମୋଦ ଆମ୍ଭମାନଙ୍କର ଏତେ ସାରବସ୍ତୁ ହୋଇଅଛି ଯେ ଆମ୍ଭେମାନେ ଯେଉଁ ପୁସ୍ତକ ସମୂହ ପାଠ କରୁଁ ତାହାମଧ୍ୟ କେବଳ ଆମୋଦ ସକାଶେ ଅଭିପ୍ରେତ । ବର୍ତ୍ତମାନ ସହର ଓ ମଫସଲ ସର୍ବତ୍ରହିଁ ଲାଇବ୍ରେରୀ ଏବଂ ପୁସ୍ତକାଗାର ସ୍ଥାପିତ ହୋଇଅଛି । ମାତ୍ର ଏହି ସମସ୍ତ ପାଠାଗାରରେ ପ୍ରଧାନତଃ ଉପନ୍ୟାସ ଓ ନାଟକହିଁ ପଠିତ ହୋଇଥାଏ ।

ଥିଏଟର ଏବଂ ସିନେମାର ଅଭ୍ୟୁଦୟରେ ଆମ୍ଭମାନଙ୍କର ଆମୋଦପ୍ରିୟତାର ଅତିବୃଦ୍ଧି ସୂଚିତ; ଏଗୁଡ଼ିକର ପ୍ରାଦୁର୍ଭାବରେ ଏହାର ଆଧିକ୍ୟ ଓ ବ୍ୟାପକତା ଜ୍ଞାପିତ । ବାଳକ, ଯୁବକ, ପ୍ରୌଢ଼ ଓ ବୃଦ୍ଧ ସଂଖ୍ୟାତୀତ ଭାବରେ ସେଗୁଡ଼ିକ ଦେଖିବା ପାଇଁ ଯାଆନ୍ତି—ସେଠାରେ ଆମୋଦରେ ମଜ୍ଜି ରହନ୍ତି । ଏଗୁଡ଼ିକରେ ଯେ ସୁଶିକ୍ଷା ହୁଏ ନାହିଁ ଏହା ନୁହେ, କିନ୍ତୁ କୁଶିକ୍ଷା ଅନୁପାତରେ ସୁଶିକ୍ଷା ଅତିକମ । ଏଗୁଡ଼ିକରେ ନୃତ୍ୟଗୀତ, ସାଜସଜା, ହାବଭାବ, ଦୃଶ୍ୟପଟ ସମସ୍ତହିଁ ଇନ୍ଦ୍ରିୟର ମୋହକର—ଇନ୍ଦ୍ରିୟର ଉତ୍ତେଜକ । ସେ ମୋହକାରିତା ସେ ଉତ୍ତେଜକତା ନିକଟରେ ବୁଦ୍ଧ ଚୈତନ୍ୟଙ୍କର ଗୋଟିଏ ଯୋଡ଼ିଏ କଥା କିମ୍ବା ଧର୍ମାଧର୍ମର ଦୁଇ ଗୁରୁପଦ ଉପଦେଶ

କିଛି କରିପାରିବ ନାହିଁ । ଅସ୍ମମାନଙ୍କର ମୋହାନ୍ଧକାର, ଅସ୍ମ-ମାନଙ୍କର ଅସଂଯତ ଓ ଉଚ୍ଛୃଙ୍ଖଳତାର ସୀମା ଅଛି କି ?

ଅସ୍ମମାନଙ୍କର ଆମୋଦପ୍ରିୟତା ଏତେ ପ୍ରବଳ ହୋଇଅଛି ଯେ ଅସ୍ମେମାନେ ଧର୍ମଚର୍ଚ୍ଚାକୁ ଆମୋଦରେ ପରିଣତ କରିଅଛୁଁ । ଅସ୍ମମାନଙ୍କ ମଧ୍ୟରୁ ଅନେକଙ୍କର ଧର୍ମଚର୍ଯ୍ୟାରେ ସାତ୍ତ୍ୱିକ ଭାବ ଆଉ ନାହିଁ, ଭକ୍ତିଭାବ ଆଉ ଦୃଷ୍ଟ ହୁଏ ନାହିଁ; ଭକ୍ତର ଏକାଗ୍ରତା ଓ ତନ୍ମୟତା ଲୁପ୍ତ ହୋଇଅଛି, ଅନ୍ନଦାନ, ବସ୍ତ୍ରଦାନ, ବିଦ୍ୟାଦାନ ପ୍ରଭୃତି କ୍ରମଶଃ ବିଲୁପ୍ତ ହେଉଅଛି । ଧର୍ମଚର୍ଯ୍ୟାକୁ ଇନ୍ଦ୍ରିୟଚର୍ଯ୍ୟା ରୂପେ ପରିଣତ କରିବା ଅତି ନିକୃଷ୍ଟ କାର୍ଯ୍ୟ । ଏଭଳି କାର୍ଯ୍ୟ ଯେ କରିପାରେ ତାହାର ବାହ୍ୟ ଜଗତହିଁ ପ୍ରଦୀପ୍ତ ମାତ୍ର ଅନ୍ତର୍ଜଗତ୍ ବିଲୁପ୍ତ । ସେ ନିଜର କାର୍ଯ୍ୟ ଏବଂ ଅପରର କାର୍ଯ୍ୟ କରିବାକୁ ଅନୁପଯୁକ୍ତ । ଏହି ହେତୁରୁ ଅସ୍ମମାନଙ୍କର କାର୍ଯ୍ୟର ସକଳ ଉଦ୍ୟମ ନିଷ୍ଫଳ ହେଉଅଛି । ବାହ୍ୟବସ୍ତୁର ମୋହ କମାଇବା ବ୍ୟତୀତ ଏହାର ପ୍ରତୀକାର ନାହିଁ । ଅସ୍ମମାନଙ୍କର କିଭଳି ଅନ୍ତଃସାର ଶୂନ୍ୟତା ଓ ଅଧଃପତନ ହୋଇଅଛି ତାହା ହୃଦୟଙ୍ଗମ କରିବା କଠିଣ ନୁହେ; କେବଳ ଅସ୍ମମାନଙ୍କର ଧର୍ମଭାବ ଉପରେ ଗୋଟିଏ ମୋହକର ଚାକଚକ୍ୟମୟ ବାହ୍ୟଜଗତ୍ ଆସି ପହଞ୍ଚି ଯିବାରୁ ଅସ୍ମମାନଙ୍କର ଏଭଳି ଅଧଃପତନ ହୋଇଅଛି । ଅସ୍ମମାନଙ୍କର ଶୋଚନୀୟ ଅବସ୍ଥା ହୃଦୟଙ୍ଗମ କରି ଦୃଢ଼ପ୍ରତିଜ୍ଞ ହୋଇ ଧୀରେ ଧୀରେ ବାହ୍ୟବସ୍ତୁ କିମ୍ବା ବାହ୍ୟଜଗତ୍ ସକାଶେ ସଂଯମୀ ହେବାକୁ ହେବ—ଅର୍ଥାତ୍ ବାହ୍ୟ ବସ୍ତୁଅଡ଼କୁ ଇନ୍ଦ୍ରିୟାଦିର ଯେଉଁ ସ୍ୱାଭାବିକ ଆସକ୍ତି ଅଛି ତାହା କମାଇ ଦେବାକୁ ହେବ । ବାହ୍ୟବସ୍ତୁର ମୋହ ଥରେ ନଷ୍ଟ କରି ପାରିଲେ ଅନ୍ତର୍ଜଗତ ଉପରେ ଦୃଷ୍ଟିପଡ଼ିବ । ଅନ୍ତର୍ଜଗତ୍‌ରେ ଥରେ ଦୃଷ୍ଟି ପଡ଼ିଗଲେ ପ୍ରକୃତ ଧର୍ମରେ ପ୍ରାଣ ପ୍ରବେଶ

କରିବ, ଆଶା ଓ ଆକାଙ୍କ୍ଷା ସମସ୍ତହିଁ ବିଶୁଦ୍ଧ ହେବ—ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ସକଳ ପ୍ରକାର ଶକ୍ତି ବର୍ଦ୍ଧିତ ହେବ—ସକଳ ସତ୍କର୍ମ ସୁନ୍ଦର ଭାବରେ ସମ୍ପନ୍ନ କରିବାକୁ ପ୍ରବୃତ୍ତି ଓ ସାମର୍ଥ୍ୟ ଜନ୍ମିବ ।

———

# ବଳ ବୀର୍ଯ୍ୟର ଅଭାବ

ସେକାଳର ଲୋକଙ୍କ ସହିତ ତୁଳନା କଲେ ବର୍ତ୍ତମାନ କାଳର ଲୋକମାନଙ୍କର ବଳ କିଛି ନାହିଁ କହିବାକୁ ହେବ । ଅର୍ଦ୍ଧ ଶତାବ୍ଦୀ ପୂର୍ବରେ ସ୍ତ୍ରୀମାନଙ୍କ କର୍ତ୍ତୃକ ଡକାଇତ ତଡ଼ିବାର ଗଳ୍ପ ଅନେକ ଶୁଣିଥିଲୁଁ, ମାତ୍ର ଏକାଳରେ ସ୍ତ୍ରୀମାନଙ୍କ କଥା ଦୂରେ ଥାଉ ପୁରୁଷର ଏଭଳି ସାହସର କାର୍ଯ୍ୟ କ୍ୱଚିତ୍ ଶୁଣାଯାଏ । ଏହି ଶାରୀରିକ ବଳବୀର୍ଯ୍ୟ ହାନିର କେତେଗୋଟି କାରଣ ନିମ୍ନରେ ନିର୍ଦ୍ଦିଷ୍ଟ ହେଲା ।

(୧) ଏକାଳର ଲୋକଙ୍କର ବଳବୀର୍ଯ୍ୟ କ୍ଷୟ ଓ ଅଳ୍ପାୟୁର ପ୍ରଧାନ କାରଣ, ଦେଶର ନୈସର୍ଗିକ ପ୍ରକୃତିର ପରିବର୍ତ୍ତନ । ଏହି ପରିବର୍ତ୍ତନର ଏକ ପ୍ରଧାନ ପ୍ରମାଣ ଏହି ଯେ, ପୂର୍ବେ ଶୀତ କାଳରେ ଯେଉଁରୂପ ଶୀତ ହେଉଥିଲା ବର୍ତ୍ତମାନ ସେପରି ହୁଏ ନାହିଁ—ସେତେବେଳେ ଯେପରି ବର୍ଷା ହେଉଥିଲା ଏ କାଳରେ ତାହା ନାହିଁ । ବର୍ଷା ଝଡ଼ି ଏକ ସପ୍ତାହ ଠାରୁ ଏକପକ୍ଷ ପର୍ଯ୍ୟନ୍ତ ଲାଗି ରହିଥିଲା । ତାହା ପୁଣି ଅବିଶ୍ରାନ୍ତ ଭାବରେ । ଏହି ବର୍ଷା ଝଡ଼ିରେ କାଠ ଅଭାବରୁ ଅଧିକାଂଶ ଲୋକଙ୍କର ଚୁହ୍ଲୀ ଜଳୁ ନ ଥିଲା । ଓଡ଼ିଶାର ଯେଉଁ ସବୁ ସ୍ଥାନକୁ ଲୋକେ ଜଳବାୟୁ ପରିବର୍ତ୍ତନ ସକାଶେ ଯାଉଥିଲେ ଏକାଳରେ ସେ ସମସ୍ତ ସ୍ଥାନ ମେଲେରିଆ ଅର୍ଥାତ୍ ଦୂଷିତ ବାଷ୍ପ ନିବନ୍ଧନ ଅସ୍ୱାସ୍ଥ୍ୟକର ହୋଇ ଉଠିଅଛି । ଭାରତବର୍ଷର ପ୍ରସିଦ୍ଧ

ସ୍ୱାସ୍ଥ୍ୟକର ସ୍ଥାନ ସମୂହ କ୍ରମଶଃ ଅସ୍ୱାସ୍ଥ୍ୟକର ରୂପେ ପରିଗଣିତ ହେଲାଣି । ସେ ସବୁ ସ୍ଥାନରେ ପୂର୍ବେ ଶୀତ କାଳରେ ଯେଉଁଭଳି ଶୀତ ହେଉଥିଲା ବର୍ତ୍ତମାନ ସେଭଳି ହୁଏ ନାହିଁ । ନାନା କାରଣରୁ ବୋଧ ହେଉଅଛି ଯେ ଭାରତବର୍ଷରେ ଗୋଟିଏ ମହା ନୈସର୍ଗିକ ପରିବର୍ତ୍ତନ ଘଟୁଅଛି । ଏଭଳି ପରିବର୍ତ୍ତନ ଲୋକର ଶାରୀରିକ ବଳବୀର୍ଯ୍ୟ ପ୍ରତି ସ୍ୱୀୟ ପ୍ରଭାବ ପ୍ରଦର୍ଶନ କରିବ ଏଥିରେ ଆଶ୍ଚର୍ଯ୍ୟ ଅବା କଅଣ ?

(୨) ଏ ଦେଶରେ ଇଂରାଜୀ ସଭ୍ୟତା ପ୍ରବେଶ ସଙ୍ଗେ ସଙ୍ଗେ ପରିଶ୍ରମ ଅତ୍ୟନ୍ତ ବୃଦ୍ଧି ହୋଇଅଛି । ଅତଏବ ପରିଶ୍ରମ ଓ ଅକାଳରେ ପରିଶ୍ରମ ଶାରୀରିକ ବଳବୀର୍ଯ୍ୟ ହ୍ରାସର ଆଉ ଗୋଟିଏ କାରଣ । ଇଂରାଜମାନେ ଯେପରି ପରିଶ୍ରମ କରନ୍ତି ଆମ୍ଭେମାନେ ସେଭଳି କେବେହେଁ କରି ପାରିବୁଁ ନାହିଁ । କିନ୍ତୁ ଆମ୍ଭେମାନେ ଇଂରାଜଙ୍କର ଅନୁକରଣରେ ପରିଶ୍ରମ କରି ବସିଲେ କୃତକାର୍ଯ୍ୟ ହେବୁଁ କିପରି ? ଇଂରାଜୀ ପରିଶ୍ରମ ଏ ଦେଶର ଉପଯୁକ୍ତ ନୁହେ । ଅତଏବ ପରିଶ୍ରମ ଯେପରି ଶାରୀରିକ ବଳକ୍ଷୟର କାରଣ, ଅକାଳରେ ପରିଶ୍ରମ ସେହିପରି ଆଉ ଏକ କାରଣ । ଏ ଦେଶର ଜଳବାୟୁ ପକ୍ଷରେ ପୂର୍ବାହ୍ଣ ଦଶଟାଠାରୁ ଅପରାହ୍ଣ ପାଞ୍ଚଟା ପର୍ଯ୍ୟନ୍ତ କାର୍ଯ୍ୟ କରିବାର ନିୟମ ସ୍ୱାସ୍ଥ୍ୟର ପ୍ରତିକୂଳ । ପ୍ରଖର ରୌଦ୍ର ସମୟରେ କାର୍ଯ୍ୟ କଲେ ଶରୀର ଶୀଘ୍ର ଅବସନ୍ନ ହୋଇଯାଏ । ବିଶେଷତଃ ବାଳକ ବାଳିକାଗଣ ଯେ ଆହାର ଉତ୍ତାରୁ ଶୀଘ୍ର ଶୀଘ୍ର ସ୍କୁଲକୁ ପଳାନ୍ତି ଏବଂ ସେଠାରେ ଆବଦ୍ଧ ବାୟୁରେ ଏକହିଁ ଗୃହରେ ଶତ ଶତ ବ୍ୟକ୍ତି ଗଳଦ୍‌ଘର୍ମ୍ମ କଳେବରରେ ରହନ୍ତି ତହିଁରେ ସେମାନଙ୍କର ସ୍ୱାସ୍ଥ୍ୟଭଙ୍ଗ ନିଶ୍ଚିତ ।

(୩) ପୂର୍ବେ କବାଡ଼ି ଖେଳ ଓ ବାଟୁଳି ମାରିବା ପ୍ରଭୃତି ଖେଳ ଯାହା ପ୍ରଚଳିତ ଥିଲା, ସେଥିରେ ଅତ୍ୟନ୍ତ ଅଙ୍ଗଚାଳନା ହେଉଥିଲା । ପୂର୍ବେ ପ୍ରାୟ ପ୍ରତ୍ୟେକ ଗ୍ରାମର ପିଲା ଓ ବୁଢ଼ା ସମସ୍ତେ ମିଶି ବ୍ୟାୟାମ ଅଭ୍ୟାସ କରୁଥିଲେ, ବର୍ତ୍ତମାନ ତାହା ନାହିଁ । ବର୍ତ୍ତମାନ କାଳରେ ବୟସ୍କମାନଙ୍କ କଥା ଦୂରେ ଥାଉ, ପନ୍ଦର ଷୋହଳ ବର୍ଷ ବାଳକ ସୁଦ୍ଧା ଅଙ୍ଗଚାଳନାରେ ବିମୁଖ । ବର୍ତ୍ତମାନ କାଳରେ ଗୋଟିଏ ବାଳକ ଯେବେ ସକାଳ ଓ ସନ୍ଧ୍ୟାରେ ପାଠ-ରତ ରହେ, ସେ ଶାନ୍ତଶିଷ୍ଟ ବାଳକରୂପେ ପରିଗଣିତ । କୌଣସି କ୍ରୀଡ଼ା ନ ଥାଇ କେବଳ ମାନସିକ ପରିଶ୍ରମ ଦ୍ୱାରା ବାଳକର ଅପକାର ହୋଇ ଥାଏ । ଯେଉଁ ପରିମାଣରେ ମାନସିକ ପରିଶ୍ରମର ଆଧିକ୍ୟ ସେହି ପରିମାଣରେ ଶାରୀରିକ ବଳର ହାନି । ସ୍କୁଲରେ ସ୍ତୂପୀକୃତ ପୁସ୍ତକରାଶି ଆୟତ୍ତ କରିବାକୁ ପିଲାମାନଙ୍କର ଯେଉଁ ପରିମାଣରେ ମାନସିକ ଶକ୍ତି ଓ ସାମର୍ଥ୍ୟ ବ୍ୟୟିତ ହୁଏ, ତହିଁରୁ ଦଶମାଂଶ ସୁଦ୍ଧା ଶାରୀରିକ ଉନ୍ନତି ସକାଶେ ବ୍ୟୟିତ ହୁଏ ନାହିଁ । ବର୍ତ୍ତମାନ କାଳରେ ସ୍କୁଲ୍ ସମୂହରେ ସଭ୍ୟତାନୁମୋଦିତ ଫୁଟବଲ୍, ହକି, କ୍ରିକେଟ୍ ଓ ଟେନିସ ପ୍ରଭୃତି ଯେଉଁ କ୍ରୀଡ଼ା ସମୂହ ପ୍ରଚଳିତ ହୋଇ-ଅଛି, ସେହି ସମସ୍ତ କ୍ରୀଡ଼ାରେ ସମସ୍ତେ ଯୋଗ ଦିଅନ୍ତି ନାହିଁ; ଯୋଗ ଦେଲେ ମଧ୍ୟ ଶରୀର ପୋଷଣ ଉପଯୋଗୀ ଖାଦ୍ୟର ଅଭାବ ।

(୪) ଅତିଶୟ ପରିଶ୍ରମ, ଅସମୟରେ ପରିଶ୍ରମ ଏବଂ ବ୍ୟାୟାମ ଚର୍ଚ୍ଚାର ହ୍ରାସ ନିବନ୍ଧନ ବର୍ତ୍ତମାନ କାଳର ଲୋକଙ୍କର ଭୋଜନ ଶକ୍ତିର ହ୍ରାସ ହୋଇଆସୁଅଛି । ଏହା ଶାରୀରିକ ବଳକ୍ଷୟର କାର୍ଯ୍ୟ ଓ କାରଣ । ପୂର୍ବକାଳର ଲୋକମାନେ ଅଧିକ ଆହାର କରୁଥିଲେ । ଏହାର ଭୂରି ଭୂରି ଦୃଷ୍ଟାନ୍ତ ପ୍ରାଚୀନ ବୟସ୍କ ଲୋକେ ଦେଖିଅଛନ୍ତି ।

ବର୍ତ୍ତମାନର ଲୋକେ ତହିଁରେ ଅକ୍ଷମ । ପୂର୍ବକାଳରେ ଯେତେବେଳେ ଅବଧାନଙ୍କ ନିକଟରେ ଚଟଶାଳୀର ଶିକ୍ଷା ଥିଲା ସେତେବେଳେ ବାଳକମାନେ ତିନିଥର ଭାତ ଖାଉଥିଲେ । ପୂର୍ବ କାଳରେ ଗୃହସ୍ଥମାନେ ନଡ଼ିଆ ଓ ଚୁଡ଼ା ଚୋବାଇ ହଜମ କରି ଦେଉଥିଲେ । ଏହା ଅତ୍ୟନ୍ତ ପୁଷ୍ଟିକର ଆହାର ସନ୍ଦେହ ନାହିଁ, କିନ୍ତୁ ବର୍ତ୍ତମାନର ଅଧିକାଂଶ ଲୋକେ ଏଭଳି ପୁଷ୍ଟିକର ଆହାର ହଜମ କରିପାରିବେ ନାହିଁ । ପୂର୍ବକାଳର ସମ୍ପନ୍ନ ଗୃହସ୍ଥମାନେ ସାରୁ ବ୍ୟଞ୍ଜନ ସୋରିଷବଟା ଦେଇ ଆହାର କରୁଥିଲେ, ମାତ୍ର ଏକାଳରେ ସାରୁ ବଦଳରେ ବିଲାତି ଆଳୁ ଓ ସୋରିଷବଟା ପରିବର୍ତ୍ତିରେ ଜିରା ପ୍ରଭୃତି ମଶଲା ବଟା ଦେଇ ବ୍ୟଞ୍ଜନ ପ୍ରସ୍ତୁତ ହେଉଅଛି । ସାରୁ ଓ ଖମ୍ବଆଳୁ ପ୍ରଭୃତି ବିଲାତି ଆଳୁଠାରୁ ଅଧିକ ପୁଷ୍ଟିକର ଏବଂ ସୋରିଷବଟା ଅନ୍ୟାନ୍ୟ ମଶଲାବଟାଠାରୁ ଯକୃତର ହିତକାରୀ । ବର୍ତ୍ତମାନର ସମ୍ପନ୍ନ ମନୁଷ୍ୟମାନଙ୍କ ମଧ୍ୟରେ ମାଂସାହାର ପୂର୍ବାପେକ୍ଷା ପ୍ରବଳ ହୋଇଅଛି ସତ୍ୟ; କିନ୍ତୁ ଅଧିକାଂଶ ଲୋକଙ୍କ ପକ୍ଷରେ ମାଂସ ଦୁଷ୍ପ୍ରାପ୍ୟ । ପୂର୍ବକାଳରେ ଆପାମର ସାଧାରଣ ଯେପରି ଦୁଗ୍ଧ ଓ ମତ୍ସ୍ୟ ପାଉଥିଲେ ବର୍ତ୍ତମାନ ଏଗୁଡ଼ିକ ମହାର୍ଘ୍ୟ ହେବାରୁ କେହି ସେପରି ପାଉନାହାନ୍ତି ।

(୫) ପ୍ରବୀଣ ବୟସ୍କ ଲୋକମାନେ ଘୃତ, ତୈଳ, ଦୁଗ୍ଧ ପ୍ରଭୃତି ଯେପରି ଅକୃତ୍ରିମ ପାଉଥିଲେ ଏକାଳରେ ଆଉ ସେପରି ମିଳୁନାହିଁ । ଦ୍ରବ୍ୟାଦିର ମୂଲ୍ୟ ବୃଦ୍ଧି ସହିତ ତାହାର କୃତ୍ରିମତା ବଢ଼ିଅଛି । ଏହା ଆଧୁନିକ ସଭ୍ୟତାର ଚିହ୍ନବିଶେଷ । ବିଲାତରେ ଏଭଳି କୃତ୍ରିମତା ବହୁପରିମାଣରେ ଚଳେ । ବର୍ତ୍ତମାନ ଖାଦ୍ୟଦ୍ରବ୍ୟରେ କେତେ ପ୍ରକାର କଅଣ ମିଶୁଅଛି, ଏହି ମିଶାଣରେ ପୁଣି ବିଷବତ୍

ଦ୍ରବ୍ୟ ସମୂହ ମଧ୍ୟ ଅଛି । ଏହି ସବୁ ଦ୍ରବ୍ୟ ବ୍ୟବହାରରେ ଯେ ଆୟୁ ଓ ବଳର କ୍ଷୟ ହେବ ଏଥିରେ ଆଶ୍ଚର୍ଯ୍ୟର କାରଣ ଅବା କଅଣ ?

(୬) ଶରୀର ସମ୍ବନ୍ଧୀୟ ଇଂରାଜୀ ଅନୁକରଣ ବ୍ୟବହାର ଅବଲମ୍ବନ ଶାରୀରିକ ବଳହାନିର ଏକ ପ୍ରଧାନ କାରଣ । ଆମ୍ଭେମାନେ ଇଂରାଜୀ ପଢ଼ି ଶରୀର ରକ୍ଷା ସମ୍ବନ୍ଧୀୟ ଅନେକ ମଙ୍ଗଳକର ପୁରାତନ ପ୍ରଥା ପରିତ୍ୟାଗ କରିଅଛୁଁ ଏବଂ ଏ ଦେଶର ଉପଯୋଗୀ କି ନୁହେ ତାହା ବିବେଚନା ନ କରି ଅନେକ ଇଂରାଜୀ ରୀତି ଅବଲମ୍ବନ କରିଅଛୁଁ ; ଇଂରାଜୀ ରୀତି ଏଦେଶ ପକ୍ଷରେ ଅନୁପଯୁକ୍ତ । ସାଧାରଣତଃ କହିବାକୁ ଗଲେ ଇଂରାଜୀ ରୀତି-ପାଳନକାରୀ ବର୍ଗ ପ୍ରାଚୀନ ରୀତି ଅନୁସରଣ-ଅଭ୍ୟସ୍ତ ବ୍ୟକ୍ତିମାନଙ୍କ ଭଳି ସବଳ ଓ ସୁସ୍ଥକାୟ ନୁହନ୍ତି । ଅମ୍ଭମାନଙ୍କ ଦେଶର ପ୍ରକୃତି ବିବେଚନା କରି ଅମ୍ଭମାନଙ୍କର ଚଳିବାହିଁ କର୍ତ୍ତବ୍ୟ । ଏହି ହେତୁରୁ ସହରର ଲୋକମାନଙ୍କଠାରୁ ଗ୍ରାମର ଲୋକମାନେ ସବଳ ।

(୭) ପୂର୍ବକାଳର ଲୋକେ ବର୍ତ୍ତମାନର ଲୋକଙ୍କ ଭଳି ସୁଖ-ପ୍ରିୟ ଓ ବିଳାସପରାୟଣ ନ ଥିଲେ; ସେମାନଙ୍କର ଅଭାବ ଅଳ୍ପ ଥିଲା । ଏହି ହେତୁରୁ ସେମାନେ ସର୍ବଦା ଆନନ୍ଦରେ ଥିଲେ । ବର୍ତ୍ତମାନ ଯେପରି ସମସ୍ତ ଲୋକଙ୍କ ମୁଖରେ ଦୁର୍ଭାବନାର ଚିହ୍ନ ଗୁଡ଼ିକ ପରିଲକ୍ଷିତ ହୁଏ ସେ କାଳର ଲୋକମାନଙ୍କର ତାହା ନ ଥିଲା । ସେମାନେ ଅମ୍ଭମାନଙ୍କ ଅପେକ୍ଷା ଅଧିକ ପରିମାଣରେ ମନର ସୁଖ ଭୋଗ କରୁଥିଲେ ସନ୍ଦେହ ନାହିଁ, କାରଣ ସେମାନେ ଅନାୟାସରେ ଜୀବିକା ନିର୍ବାହ କରୁଥିଲେ ଏବଂ ଅଳ୍ପରେ ସନ୍ତୁଷ୍ଟ ଥିଲେ । ବର୍ତ୍ତମାନ ସମସ୍ତ ଦ୍ରବ୍ୟାଦି ମହାର୍ଘ୍ୟ ହୋଇଅଛି । ଜୀବିକା ଲାଭ ମଧ୍ୟ କଠିଣ । ସମ୍ଭ୍ରମ-ରକ୍ଷା ସକାଶେ ଲୋକେ ଅଳ୍ପରେ ସନ୍ତୁଷ୍ଟ

ରହି ପାରନ୍ତି ନାହିଁ । ଲୋକଙ୍କର ଦୁର୍ଭାବନା ବୃଦ୍ଧି ସେମାନଙ୍କର ଆୟୁ ଓ ଶାରୀରିକ ବଳକ୍ଷୟର ଗୋଟିଏ ପ୍ରଧାନ କାରଣ ।

(୮) ଏକ ଅଡ଼େ ଯେପରି ଦୁର୍ଭାବନାର ବୃଦ୍ଧି ଅପର ଅଡ଼େ ତାହାର ପ୍ରତିବିଧାନ ସକାଶେ ଆମୋଦ ପ୍ରମୋଦର ଅଭାବ । ପୂର୍ବକାଳରେ ସଙ୍ଗୀତ ଚର୍ଚ୍ଚାର ସବିଶେଷ ବ୍ୟବସ୍ଥା ଥିଲା । ପ୍ରତ୍ୟେକ ଗ୍ରାମ ଏବଂ ସହରର ପ୍ରତ୍ୟେକ ସାହିରେ ସଙ୍ଗୀତର ଆଖଡ଼ା ଥିଲା । ବର୍ତ୍ତିମାନ ଏହି ସବୁ ଆଖଡ଼ା ବିରଳ । ବର୍ତ୍ତିମାନର ଲୋକଙ୍କୁ ହୃଦୟ ଖୋଲି ହସିବାକୁ ଦେଖାଯାଏ ନାହିଁ । ଠହ ଠହ ହାସ୍ୟ ଦେଖିବା କଠିଣ ।

(୯) ସେ କାଳରେ ଏ ଦେଶରେ 'ବାବୁ' ଅଳ୍ପ ଥିଲେ, ମାତ୍ର ଏ କାଳରେ ସମସ୍ତେହିଁ 'ବାବୁ' ରୂପେ ପରିଣତ ହେବାକୁ ତତ୍ପର । 'ବାବୁ' ଶବ୍ଦଟିର ପ୍ରକୃତ ଅର୍ଥ ସୁଗନ୍ଧଯୁକ୍ତ । ମାତ୍ର ସଦ୍‌ଗୁଣ ରାଶି ସମନ୍ୱିତ ସୁଗନ୍ଧ ପରିବର୍ତ୍ତିରେ ବିଳାସ ପରାୟଣତା ଏ କାଳର ବାବୁମାନଙ୍କର ଭୂଷଣ ହୋଇଅଛି । ପୂର୍ବେ ମୋଟ ଖାଇବା ମୋଟ ପିନ୍ଧିବାର ବ୍ୟବସ୍ଥା ସାଧାରଣ ଥିଲା, ମାତ୍ର ଏ କାଳରେ ବାବୁଗିରିର ଗ୍ଭଲଚଳନ, ସାଧାରଣ ଏବଂ ମୋଟ ଗ୍ଭଲଚଳନ ବିରଳ । ବର୍ତ୍ତିମାନ କାଳରେ କି ଭଦ୍ର, କି ଇତର ଲୋକେ ଉପାର୍ଜ୍ଜନଶୀଳ ହେଲେ, ଗାଡ଼ି, ରେଲ, ମୋଟର ବ୍ୟତୀତ ଗ୍ଭଲିବାକୁ ଅକ୍ଷମ । ପୂର୍ବକାଳର ଅଧିକାଂଶ ଭଦ୍ରଲୋକମାନେ ଶାରୀରିକ ପରିଶ୍ରମ-ବିମୁଖ ନ ଥିଲେ । ଏଥିରେ ସେମାନେ ବର୍ତ୍ତିମାନର ଲୋକଙ୍କ ଅପେକ୍ଷା ସୁସ୍ଥ ଓ ବଳିଷ୍ଠ-କାୟ ହେଉଥିଲେ । ଓଡ଼ିଶା ଗଡ଼ଜାତର କନ୍ଧ, କୋହ୍ଲ, ଭୂମିଜ, ଗଣ୍ଡ, ସାନ୍ତାଳ, ଭୂୟାଁ, ଜୁଆଙ୍ଗ, ଶବର ଓ ଖଡ଼ିଆ ପ୍ରଭୃତି ଜାତିର ଲୋକମାନଙ୍କୁ ଦେଖିଲେ ଶାରୀରିକ ବଳବୀର୍ଯ୍ୟର ନମୁନା ଏ କାଳରେ ମିଳି ପାରିବ ।

ଉଲ୍ଲିଖିତ କାରଣ ପ୍ରଭାବରୁ ଏ ଦେଶର ଲୋକେ ବିଶେଷତଃ ଭଦ୍ର ଆଖ୍ୟାଧାରୀ ଲୋକମାନେ କ୍ରମଶଃ କ୍ଷୀଣ, ରୁଗ୍ଣ ଓ ଅଳ୍ପାୟୁ ହୋଇ ଯାଉଅଛନ୍ତି । ପଲ୍ଲୀଗ୍ରାମରେ ଭଦ୍ରଲୋକମାନେ ହାଟବଜାରରୁ ସମସ୍ତ ପ୍ରୟୋଜନୀୟ ଦ୍ରବ୍ୟ ସ୍ୱୟଂ ଯାଇ କିଣି ଆଣୁଥିଲେ । ବର୍ତ୍ତମାନ ପଲ୍ଲୀଗ୍ରାମର ହାଟବଜାରରେ ଭଦ୍ର ବୃଦ୍ଧବ୍ୟକ୍ତି ଅଧିକ ଦେଖାଯାଅନ୍ତି ନାହିଁ । ସାଧାରଣ ବୃଦ୍ଧହିଁ ଅଧିକ ଦେଖାଯାଅନ୍ତି । ଏଥିରୁ ଅନୁମିତ ହେବ ଯେ ଭଦ୍ରଲୋକମାନେ ଅଳ୍ପାୟୁ ହୋଇ ଯାଉଅଛନ୍ତି ।

---

# ମନୁଷ୍ୟତ୍ୱ

ଏହି ବିଂଶ ଶତାବ୍ଦୀର ଆରମ୍ଭ ସମୟର ଓ ଏହାର ପୂର୍ବବର୍ତ୍ତୀ କାଳର ମନୁଷ୍ୟ ଜୀବନର ଉଦ୍ଦେଶ୍ୟ କେବଳ ମନୁଷ୍ୟତ୍ୱହିଁ ଥିଲା । ମନୁଷ୍ୟତ୍ୱ ଶବ୍ଦଟି କହିଲେ ଯେତେ ଭାବ ବ୍ୟକ୍ତ ହୁଏ, ଏତେ କି ଅନ୍ୟ ଗୋଟିଏ ଶବ୍ଦରେ ହୋଇପାରେ ? ମନୁଷ୍ୟତ୍ୱ କହିଲେ ଲୌକିକତା, କୁଟୁମ୍ବିତା, ସଜ୍ଜନ ପ୍ରତି ଶ୍ରଦ୍ଧା, ଗରିବ ଦୁଃଖୀ ପ୍ରତି ଦୟା, ନିରାଶ୍ରୟକୁ ଆଶ୍ରୟ ଦାନ, ବିପନ୍ନର ବିପଦ ଉଦ୍ଧାର, ଅନାଥର ସହାୟତା, ବ୍ୟଥିତର ବ୍ୟଥା ନିବାରଣ, ଦରିଦ୍ରର ଦୁଃଖ ଭଞ୍ଜନ, ନିରନ୍ନକୁ ଅନ୍ନଦାନ, ବିବସ୍ତ୍ରକୁ ବସ୍ତ୍ରଦାନ, ଅପରାଧୀର ଅପରାଧ ମାର୍ଜ୍ଜନା, ଶୋକାର୍ତ୍ତର ସାନ୍ତ୍ୱନା, ସମସ୍ତଙ୍କ ଘରକୁ ଯିବା ଆସିବା ପ୍ରଭୃତି ଯାହା କିଛି ମନୁଷ୍ୟ ହୃଦୟର କୋମଳ, ସରସ, ଉଦାର କାର୍ଯ୍ୟ ରହିଅଛି ଗୋଟିଏ ମାତ୍ର ମନୁଷ୍ୟତ୍ୱ ଶବ୍ଦରେ ସମସ୍ତ ସୂଚିତ ହୁଏ । ମନୁଷ୍ୟତ୍ୱ କହିଲେ ମନୁଷ୍ୟ ଏବଂ ଇତର ପ୍ରାଣୀ ସମୂହର ହିତସାଧନ ଓ ହିତକାମନା ବୁଝାଇବ । ମନୁଷ୍ୟ ଯେତେ କିଛି କ୍ଷୁଦ୍ର ହୋଇ ପଛକେ, ଯେ ଯଥାର୍ଥ ମନୁଷ୍ୟ ହେବ, ଯାହାର ଯଥାର୍ଥ

ମନୁଷ୍ୟତ୍ୱ ଥିବ, ସେ ତାହାଠାରୁ ନୀଚ ମନୁଷ୍ୟର ସୁଦ୍ଧା ବ୍ୟଥାର ବ୍ୟଥୀ ହେବ । କିନ୍ତୁ ଏକାଳର ମନୁଷ୍ୟ ଜୀବନର ଉଦ୍ଦେଶ୍ୟ ପ୍ରକୃତ ମନୁଷ୍ୟତ୍ୱ ଅର୍ଜ୍ଜନ ନୁହେ । ଆଜିକାଲି ଯେଉଁ ଲୋକ ପରର ଦୁଃଖରେ ଦୁଃଖୀ ହୁଏ, ଅପରର ବ୍ୟଥାରେ ଯାହାର ହୃଦୟ ଦ୍ରବ ହୁଏ, ଲୋକେ ତାହାଙ୍କୁ ବେକୁବ ଆଖ୍ୟା ଦେଇଥାଅନ୍ତି । ଯେ ପ୍ରତିବେଶୀ-ମାନଙ୍କର କାର୍ଯ୍ୟ ଘେନି ବ୍ୟସ୍ତ ରହିଥାନ୍ତି, ଲୋକର ବିପଦ ଦେଖିଲେ ସାହାଯ୍ୟ କରିବାକୁ ଅଗ୍ରସର ହୁଏ ତାହାଙ୍କୁ ଲୋକେ Weak minded କହନ୍ତି । ଆଜି କାଲିର ଲୋକେ ଇଂରାଜୀ ଭାଷାର Shine ହେବାକୁ ଚେଷ୍ଟା କରି ଥାଅନ୍ତି । Shine ଶବ୍ଦଟିର ଉତ୍କଳାନୁବାଦ ହୋଇପାରିବ ନାହିଁ । ଉତ୍କଳାଭିଧାନରେ ଏଭଳି ଉତ୍କଟ ସ୍ୱାର୍ଥପରତାସାର ସଂଗ୍ରହଦ୍ୟୋତକ ଶବ୍ଦ ନାହିଁ । ପୃଥିବୀରେ ଯେତେ ପ୍ରକାର ସ୍ୱାର୍ଥପରତା ରହିଅଛି Shine ହେଉଅଛି ତାହାର ଶେଷ ସୀମା । ଆତ୍ମୀୟ ସ୍ୱଜନ ଦେଖିବ ନାହିଁ, ଜ୍ଞାତି ବନ୍ଧୁର ମୁହଁକୁ ଅନାଇବ ନାହିଁ, ପ୍ରତିବେଶୀ ଦୀନ ଦୁଃଖୀଙ୍କ ଆଡ଼କୁ ଗୁହିଁବ ନାହିଁ, କେବଳ ଦେଖିବ କାହିଁରେ ମୁଁ ବଡ଼ ହୋଇପାରେ, କାହିଁରେ ମୋହର କୋଠା, ଗାଡ଼ି ଓ ପରିଚ୍ଛଦ ପ୍ରଭୃତିର ଉତ୍କର୍ଷ ସାଧିତ ହୁଏ, କାହିଁରେ ଲୋକଙ୍କ ନିକଟରୁ ଅଧିକ ବାହାବା ପାଇ ପାରିବ ।

ବର୍ତ୍ତମାନ କାଳର ଅଭିଧାନରେ ଯେଉଁମାନେ ବଡ଼ଲୋକ ବୋଲି ପରିଚିତ ସେମାନେ କାହାରି ସହିତ ମିଶନ୍ତି ନାହିଁ । ସେମାନେ କେବଳ ଭାଳନ୍ତି ଯେଉଁମାନେ ସେମାନଙ୍କଠାରୁ ବଡ଼ ତାହାଙ୍କ ସଙ୍ଗରେ କିପରି ମିଶିବେ । ଇଂରାଜୀରେ 'High Circle' ରେ move କରିବାର ପ୍ରଥା ଏହି ବଡ଼ଲୋକ ମାନଙ୍କଦ୍ୱାରା ଅଥବା ଯେଉଁମାନେ shine କରିଅଛନ୍ତି ସେମାନଙ୍କ ଦ୍ୱାରା ସୃଷ୍ଟି ।

ପୂର୍ବର ବଡ଼ଲୋକମାନେ କିପରି ଥିଲେ ? ଯେଉଁ ଗ୍ରାମ ଅଥବା ସାହିରେ ଜଣେ ବଡ଼ଲୋକ ରହୁଥିଲେ, ତାହାଙ୍କ ଚରିତ୍ର ଚର୍ଚ୍ଚାରୁ ସେ ଗ୍ରାମ ଅଥବା ସାହି ଆଲୋକିତ ହେଉଥିଲା । ବାକ୍ୟରେ ହେଉ, କାର୍ଯ୍ୟରେ ହେଉ, ଅର୍ଥଦ୍ୱାରା ହେଉ, ଆତ୍ମୀୟ ସ୍ୱଜନ, ବନ୍ଧୁବାନ୍ଧବ, ଓ ପ୍ରତିବେଶୀମାନଙ୍କ ଉପକାର ସାଧନରେ ବ୍ୟସ୍ତ ରହୁଥିଲେ । ଯେଉଁମାନେ ଉପକାର ପ୍ରତ୍ୟାଶୀ ନୁହନ୍ତି ସେମାନଙ୍କର ବିପଦରେ ଓ ସମ୍ପଦରେ ଯିବା ଆସିବା ଓ କଥାବାର୍ତ୍ତା କିମ୍ବା କର୍ମକାର୍ଯ୍ୟ ପ୍ରଭୃତିରେ ସାହାଯ୍ୟ କରୁଥିଲେ । ଏଥିରେ ସମ୍ପଦ ସମୟରେ ଆନନ୍ଦ ଦ୍ୱିଗୁଣିତ ହେଉଥିଲା ଏବଂ ବିପଦ ସମୟରେ କଷ୍ଟ ଅର୍ଦ୍ଧେକ ପରିମାଣରେ ଦୂର ହେଉଥିଲା । ସେ ଭଳି ବଡ଼ଲୋକ ସକାଳେ ଉଠିଲେ ଗ୍ରାମ ଅଥବା ସାହିର କେତେକ ବ୍ୟକ୍ତି ତାହାଙ୍କ ପାଖରେ ରୁଣ୍ଡ ହେଉଥିଲେ ଏବଂ ନାଥିଆ ବାଉରିଠାରୁ ଶାମିଆ ମା ଗୃହିଣୀ ପର୍ଯ୍ୟନ୍ତ ସମସ୍ତଙ୍କର ସୁଖଦୁଃଖ କଥା ପଡ଼ୁଥିଲା ଏବଂ ସଙ୍ଗେ ସଙ୍ଗେ ପ୍ରତିକାରର ବ୍ୟବସ୍ଥା ମଧ୍ୟ ହେଉଥିଲା ।

ଯେପରି କୌଣସି ସ୍ଥାନରେ ଗୋଟିଏ ଫୁଲ ଫୁଟିଲେ ତାହାର ସୌରଭରେ ସେହି ସ୍ଥାନଟି ମହକି ଉଠେ, ସେହିପରି ଏଭଳି ଗୋଟିଏ ଲେଖାଏଁ ବଡ଼ଲୋକର ସୌରଭରେ ଦେଶ ଆମୋଦିତ ହେଉଥିଲା ଏବଂ ଚତୁର୍ଦ୍ଦିଗର ଲୋକେ ଏଭଳି ବଡ଼ଲୋକ ଦ୍ୱାରା ନାନା ଭାବରେ ଉପକୃତ ହେଉଥିଲେ । ଏହି ଲେଖକ ସ୍ୱଚକ୍ଷୁରେ ଅନେକ ସ୍ଥଳରେ ଏହା ଦେଖି ଏକ ସମୟରେ କୃତାର୍ଥ ହୋଇଅଛି ।

ବିଂଶ ଶତାବ୍ଦୀର ନୂତନ ସମାଜରେ ଏଭଳି ଫୁଲ କ୍ୱଚିତ୍ ଫୁଟିବାର ଦେଖାଯାଏ । ଏ ଯୁଗରେ କୌଣସି ସାହି କିମ୍ବା ଗ୍ରାମର ବଡ଼ଲୋକ ହେଲେ ପ୍ରତିବେଶୀ ମାନଙ୍କର ଜମି କିମ୍ବା ଘର କିପରି ଗ୍ରାସ କରିବେ ସେହି ଭାବନାରେ ସର୍ବଦା ଶଙ୍କିତ । ନୂତନ ସମାଜରେ

ସେଭଳି ବଡ଼ଲୋକ ପ୍ରାୟ ଦେଖନ୍ତି ନାହିଁ । ବଣିକ ଭାବାପନ୍ନ ଇଂରାଜର ସାମୀପ୍ୟ ଓ ସାହଚର୍ଯ୍ୟରେ କାଳ କଟାଇ ତଥା ଇଂରାଜୀ ଭାଷା ଶିକ୍ଷା କରି ଆମ୍ଭେମାନେ ଅତିରିକ୍ତ ଭାବରେ ଆତ୍ମମ୍ଭରୀ ଓ ଅସାମାଜିକ ହୋଇ ପଡ଼ିଅଛୁଁ । "Live for others" ଏ କଥାର ନୀତିଟିକ ଆମ୍ଭମାନଙ୍କର ପ୍ରାଚୀନ ଲୋକେ ଯେପରି ବୁଝୁଥିଲେ ବର୍ତ୍ତମାନ ସମାଜ ତାହା ବୁଝେ ନାହିଁ । ବର୍ତ୍ତମାନର ସମାଜ "Live for others" ଏହି କଥାଟି ବୁଝାଇବା ସକାଶେ ସଭା, ସମ୍ମେଳନ, କ୍ଲବ, ସୋସାଇଟି, ମିଟିଂ, ଏସୋସିଏସନ୍ ପ୍ରଭୃତି କରିଥାଆନ୍ତି । ଠିକ୍‌ଏ ଭଲ ଦେଖିଲେ ବୋଧହେବ ଏଗୁଡ଼ିକ ମଧ୍ୟରେ ସୁଦ୍ଧା ଇଂରାଜୀ Shine ନାମକ ପଦାର୍ଥ ରହିଅଛି । ଅନେକେ ଏହି ଭାବରେ ପରହିତ କରିବାକୁ ଯାଇ ଗୁରୁତର ଆତ୍ମହିତ କରିଥାଆନ୍ତି । ପ୍ରାୟ ଦେଖୁଁ ଯେଉଁମାନେ ସଭା ସମିତି ସ୍ଥାପନ କରନ୍ତି ସେମାନଙ୍କର ନିଜ ନିଜର ଇଷ୍ଟ ସିଦ୍ଧି ହେବାମାତ୍ରେ ହିଁ ସଭା ପ୍ରତି ହତାଦର କରିଥାଅନ୍ତି । ସଭା କିମ୍ବା ଏସୋସିଏସନର ପରହିତ ଫମ୍ପା ଦ୍ରବ୍ୟ, ତହିଁ ମଧ୍ୟରେ ପ୍ରକୃତ ସାର ବସ୍ତୁ ଖୋଜି ପାଇବା କଠିଣ । ଖାଲି ହାଣ୍ଡି ବଜାଇଲେ ଅବଶ୍ୟ ଅଧିକ ଶବ୍ଦ ହୁଏ, କିନ୍ତୁ ସେଥିରେ କିଛି କାର୍ଯ୍ୟ ହୁଏ ନାହିଁ । କାରଣ ବର୍ତ୍ତମାନର ଯେଉଁ ସମସ୍ତ ବ୍ୟକ୍ତି ସଭା କରିଥାଆନ୍ତି ସେମାନଙ୍କର ଜୀବନର ଉଦ୍ଦେଶ୍ୟ Shine କରିବା; ସୁତରାଂ ସେମାନେ ସଭାଗୁଡ଼ିକ ଏଭଳି ତିଆର କରନ୍ତି ଯହିଁରେ ଶବ୍ଦ ଅଧିକ ହୁଏ ଏବଂ ଇଂରାଜୀ activity ଶବ୍ଦ ପ୍ରଭାବିତ ଦେଶର ଲୋକେ ମନେ କରନ୍ତି, ଅମୁକ ଅମୁକ ଲୋକେ Shine କରୁଅଛନ୍ତି ।

ଏ କାଳର ଲୋକ ଇଂରାଜଙ୍କ ସହବାସ ଏବଂ ଇଂରାଜୀ ଶିକ୍ଷା ପ୍ରଭାବରୁ ଯାହାକିଛି ହରାଇଅଛନ୍ତି ତାହା ମଧ୍ୟରେ ମନୁଷ୍ୟତ୍ୱ ହିଁ

ପ୍ରଧାନ । ମନୁଷ୍ୟତ୍ୱର ଅଭାବରୁ ସମସ୍ତହିଁ ସାର ଶୂନ୍ୟ ହୋଇ ଉଠିଅଛୁ । ଗିଲ୍‌ଟି ଅଧିକ ଚାଲିଅଛୁ, ଯେତେ ସାର କମ୍, ସେତେ ଅଧିକ ଝଟକୁ ଅଛୁ । ବଡ଼ ଠାରୁ ସାନ ପର୍ଯ୍ୟନ୍ତ ସମସ୍ତେହିଁ ବଣିକ ଭାବାପନ୍ନ—ନିଜର କଡ଼ା କ୍ରାନ୍ତି ବୁଝି ନେବାକୁ, ସମସ୍ତେହିଁ ତତ୍ପର—ଅନ୍ୟର କୌଣସି ବିଷୟ ବୁଝିବାକୁ ଏକାନ୍ତ କାତର । ଯେଉଁ ସମାଜରେ ଯଥାର୍ଥ ମନୁଷ୍ୟତ୍ୱ ବିଶିଷ୍ଟ ଲୋକର ଆଦର ନାହିଁ ଏବଂ ଗିଲ୍‌ଟି ଲୋକର ଆଦର ଅଧିକ, ସେ ସମାଜର ଅବସ୍ଥା ବାସ୍ତବିକ ଶୋଚନୀୟ । ପୂର୍ବର ମନୁଷ୍ୟତ୍ୱ କି ଆଉ ଦେଖିବୁଁ ? ଆଉ କି ଆମ୍ଭମାନଙ୍କ ମନରେ ମନୁଷ୍ୟତ୍ୱ କରିବାର ବାଞ୍ଛା ପ୍ରବଳ ହେବ ଏବଂ ଇଂରାଜୀ Shine କରିବାର ବାଞ୍ଛା ତିରୋହିତ ହେବ ? ଆଶା ନାହିଁ—ସମାଜର ପ୍ରକୃତ ମଙ୍ଗଳ ହେବାର ଭରସା ନାହିଁ ।

---

## ଯୁଗଧର୍ମ୍ମରେ ନାରୀ

ବର୍ତ୍ତମାନ ଯୁଗରେ ସମାଜରେ ନାରୀର ଅଧିକାର ନେଇ ବହୁ ଆଲୋଚନା, ସଭା ସମିତି ଓ ସମ୍ବାଦ ପତ୍ରରେ ଆନ୍ଦୋଳନ ହୋଇଅଛି ଓ ହେଉଅଛି ଏବଂ ନିତ୍ୟ-ନୂତନ ଆଲୋଚନା ମଧ୍ୟ ଚାଲିଅଛି— ଏହାର ଯେପରି ଆଉ ଶେଷ ନାହିଁ ।

ଏ ସମ୍ପର୍କରେ କିପରି ସମାଜ ଗଠନ ହେଲେ ନାରୀମାନଙ୍କର ମଙ୍ଗଳ ହେବ ତାହା ନେଇ ମତଭେଦର ସୀମା ନାହିଁ । ପୁରୁଷମାନଙ୍କ କଥା ଛାଡ଼ିଦେଲେ ମଧ୍ୟ ସ୍ତ୍ରୀ ମାନଙ୍କ ମଧ୍ୟରୁ ଅନେକ ସ୍ଥଳରେ ସେମାନେ ଅନେକ ମତ ପୋଷଣ କରିଥାଆନ୍ତି । ନାରୀମାନଙ୍କ ମଧ୍ୟରୁ ଅନେକ ଅଛନ୍ତି ଯେଉଁମାନେ ନାରୀମାନଙ୍କର ଅଧୀନତା, ଦୁଃଖ, ଦୁର୍ଦ୍ଦଶା ପ୍ରଭୃତି ସବୁ ବିଷୟ ସକାଶେ ଏକମାତ୍ର ପୁରୁଷଜାତିକୁ

ଦାୟୀକର ସେମାନଙ୍କ ବିରୁଦ୍ଧରେ ବହୁ ତିକ୍ତ ମନ୍ତବ୍ୟ ପ୍ରକାଶ କରିଥାଆନ୍ତି ଏବଂ ଏହା କ୍ରମଶଃ ବ୍ୟାପକ ହୋଇ ଗୋଟିଏ ପୁରୁଷ-ବିଦ୍ୱେଷୀ ନାରୀବାହିନୀ ସବୁ ପ୍ରଦେଶରେ ଗଠିତ ହେଉଅଛି କହିଲେ ଚଳେ ।

ପୁଣି ଏହାର ଠିକ୍ ବିପରୀତ ମତାବଲମ୍ବିନୀ ଆଉ ଏକ ଦଳ ଅଛନ୍ତି ଯେଉଁମାନେ ନିଜକୁ ପୁରୁଷର ଦାସୀ ବ୍ୟତୀତ ଆଉ କିଛି ଭାବିବାକୁ ଚମକି ଉଠନ୍ତି । ପତିବ୍ରତା, ସହଧର୍ମିଣୀ ପ୍ରଭୃତି ଶ୍ରୁତି-ସ୍ମୃତିଗ୍ରନ୍ଥର ବିବିଧ ବିଶେଷଣରେ ନିଜମାନଙ୍କୁ ବିଶେଷିତ କରିବାକୁ ଭଲ ପାଆନ୍ତି ଅଥଚ ଏମାନେ ପତିବ୍ରତା ଓ ସହଧର୍ମିଣୀର ସ୍ୱରୂପ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଜ୍ଞ । ବ୍ୟକ୍ତିଗତ ସୁଖ ସୁବିଧାଟିକ ଯେପରି ଏମାନଙ୍କ ନିକଟରେ ସବୁଠାରୁ ବଡ଼, ଏହି ନାରୀମାନେ ଭାବନ୍ତି "ଆମ୍ଭେମାନେ ଭଲ ରହିଅଛୁଁ ଆଉ ଗୋଳମାଳରେ ଆବଶ୍ୟକ କଅଣ ?" ଏମାନେ ହୁଏତ ବିବିଧ ସୁଖୈଶ୍ୱର୍ଯ୍ୟରେ ପାଳିତ ହୋଇ ସ୍ୱୀୟ ପ୍ରଭୁର ଗୁଣ କୀର୍ତ୍ତନ କରୁଅଛନ୍ତି । ସୌଭାଗ୍ୟକ୍ରମେ ଯେଉଁ-ମାନଙ୍କର ଏହି ସୁବିଧା ଘଟିଅଛି ସେମାନେ ଭାବନ୍ତି ଗୋଳମାଳ ଅନାବଶ୍ୟକ, ମନ ଯୋଗାଇ ଚାଲିଲେ ଜୀବନର ଅବଶିଷ୍ଟାଂଶ ସୁଖରେ କଟିଯିବ ।

କିନ୍ତୁ ସମସ୍ୟା ଏହିଠାରେ । ସମସ୍ତଙ୍କର ସହୃଦୟ ପ୍ରଭୁ ମିଳନ୍ତି ନାହିଁ । ଅନେକ ଗୋଳମାଳ ଆବଶ୍ୟକ ହୁଏ ଏବଂ ଗୋଳମାଳ କରିବାକୁ ହୁଏ । ଅବିଚାରରେ ବିଦ୍ରୋହର ଜନ୍ମ ହୁଏ ଏବଂ ଗୋଟିଏ ବିଦ୍ରୋହର ସଂସ୍ପର୍ଶରେ ବହୁ ବିଦ୍ରୋହର ସୃଷ୍ଟି ହୁଏ ।

ସ୍ତ୍ରୀମାନଙ୍କ ସମ୍ବନ୍ଧରେ ଏତିକି କହିବା ଆବଶ୍ୟକ ଯେ, ନିଜ-ମାନଙ୍କ ଦୁର୍ଦ୍ଦଶା ସକାଶେ ଅନ୍ୟକୁ ଦୋଷୀ କରିବା ଦୁର୍ବଳତାର ଲକ୍ଷଣ । ସମସ୍ତଙ୍କୁ କେହି ଅଧୀନ କରି ପାରନ୍ତି ନାହିଁ ଏବଂ କ୍ଷମତା

ମଧ୍ୟ କେହି ତାହାରକୁ ଦେଇପାରନ୍ତି ନାହିଁ, ନିଜର ସାଧନା ଦ୍ୱାରା ତାହା ଅର୍ଜନ କରିବାକୁ ହୋଇଥାଏ ।

ସ୍ୱାଧୀନତା ଭିକ୍ଷାର ଦ୍ରବ୍ୟ ନୁହେ, ତାହା କ୍ଷମତା ଦ୍ୱାରା ଅର୍ଜନ କରିବାର ଦ୍ରବ୍ୟ । ନାରୀଜାତି ମଧ୍ୟ ସେହିପରି 'ଦୁଃଖ ଦୁର୍ଦ୍ଦଶା ସକାଶେ ପୁରୁଷମାନଙ୍କ ଦ୍ୱାରଦେଶରେ ଅଭିଯୋଗ ନ କରି ନିଜ-ମାନଙ୍କୁ ଉପଯୁକ୍ତ କରନ୍ତୁ । ଯେ ସମ୍ମାନର ଉପଯୁକ୍ତ ତାହାଙ୍କର ସମ୍ମାନ କେହି କ୍ଷୁଣ୍ଣ କରି ପାରିବେ ନାହିଁ ।

ନିଜମାନଙ୍କର ଅବନତି ସକାଶେ ଅନ୍ୟକୁ ଦୋଷୀ କରିବା ପୂର୍ବରୁ ଭାଳି ଦେଖିବା ଉଚିତ, ପୁରୁଷମାନେ କେବେହେଁ ନାରୀ ଜାତିକୁ ପଶ୍ଚାତରେ ପକାଇ ନାହାନ୍ତି । ବୈଦିକ ଯୁଗରେ ଯେ ନାରୀ ପୁରୁଷ ପାର୍ଶ୍ୱରେ ବସି ବେଦମନ୍ତ୍ର ରଚନା କରିଅଛନ୍ତି ସେହି ନାରୀହିଁ ନିଜ ଆତ୍ମବିଶ୍ୱାସ ହରାଇ ନିଜକୁ କ୍ରମଶଃ ଜଡ଼ବତ୍ ଗୃହ ପୁତ୍ତଳିକାରେ ପରିଣତ କରିଅଛନ୍ତି ।

ଊନବିଂଶ ଶତାବ୍ଦୀରେ ନାରୀର ଅବସ୍ଥା ସର୍ବାପେକ୍ଷା ଶୋଚନୀୟ ବୋଲିବାକୁ ହେବ । ଖନା, ଲୀଳାବତୀଙ୍କ ଦେଶର ସ୍ତ୍ରୀମାନଙ୍କର ବର୍ଣ୍ଣ-ଜ୍ଞାନ ମଧ୍ୟ ଲୁପ୍ତ ହୋଇଯାଇଥିଲା । ସେହି ଦୁର୍ଦ୍ଦଶାର ଅନ୍ଧକୂପରୁ ଉଠି ଛିଡ଼ା ହେବାକୁ ନାରୀ ଜାତିକୁ ଯେଉଁମାନେ ସାହାଯ୍ୟ କରିଥିଲେ ସେହିମାନେହିଁ ପୁରୁଷ । ବକ୍ଷିଦବାଦୀ ପୁରୁଷଙ୍କ ସଂଖ୍ୟା ଅଧିକ ହେଲେହେଁ "ସତୀଦାହର" ଶୋଚନୀୟ ମୃତ୍ୟୁରୁ ନାରୀ ଜାତିକୁ ମହାତ୍ମା ରାଜା ରାମମୋହନ ରାୟ ଏବଂ ମହାମତି ବଡ଼ଲାଟ ଲର୍ଡ଼ ଉଇଲିୟମ୍ ବେଣ୍ଟିକ ହିଁ ରକ୍ଷା କରିଥିଲେ ।

ହିନ୍ଦୁ ବିଧବାର ଅସହାୟ ଅବସ୍ଥାର ପ୍ରତୀକାର କରିବାକୁ ମହାମନସ୍ୱୀ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଅପ୍ରାଣ ଚେଷ୍ଟା କରିଥିଲେ । ବାଲ ବିଧବାର ସଂଖ୍ୟା କମାଇବାକୁ ସାରଦା ଆଇନର ଉଦ୍ୟୋକ୍ତା-

ମାନେହିଁ ପୁରୁଷ । ବର୍ତ୍ତମାନ ସୁଦ୍ଧା ନାରୀ ଜାତିର ମଙ୍ଗଳ ସକାଶେ ଅନ୍ତତଃ ଗୋଟିଏ ଯୋଡ଼ାଏ ଆଇନ ବିଧିବଦ୍ଧ କରିବାକୁ ଯେଉଁମାନେ ଚେଷ୍ଟା କରୁଅଛନ୍ତି, ସେମାନେ ମଧ୍ୟ ପୁରୁଷ ।

ପ୍ରାଗୈତିହାସିକ ଯୁଗରେ ଯେତେବେଳେ ଦୈହିକ ଶକ୍ତିର ପ୍ରାଧାନ୍ୟ ଥିଲା, ସେହି ବର୍ବର ଯୁଗରେହିଁ ନାରୀ ପୁରୁଷାପେକ୍ଷା ଶାରୀରିକ ବଳରେ ହୀନ ବୋଲି ପୁରୁଷର ଦାସତ୍ୱ କରିବାକୁ ବାଧ୍ୟ ଥିଲା, କିନ୍ତୁ କେବଳ ଆସୁରିକ ଶକ୍ତି ଯେ କେବଳ ଶ୍ରେଷ୍ଠତ୍ୱର ମାପକାଠି ନୁହେ—ଧୈର୍ଯ୍ୟ, କ୍ଷମା, ଶିକ୍ଷା, ସଂସ୍କୃତିହିଁ ଯେ ଏହା ମଧ୍ୟରେ ଆବଶ୍ୟକ, ସମାଜ ଜୀବନରେ ମନୁଷ୍ୟ ତାହା ସ୍ୱୀକାର କରି ଯାଇଅଛି ଏବଂ ସେ କ୍ଷେତ୍ରରେ ଆମ୍ଭେମାନେ ନାରୀକୁ ପୁରୁଷ ସଙ୍ଗରେ ସମତାଳରେ ଗୋଡ଼ ପକାଇବାକୁ ଦେଖିଅଛୁଁ ।

ସମାଜର ବିଭିନ୍ନ ସମ୍ପ୍ରଦାୟର ଯେପରି ବିଭିନ୍ନ କାର୍ଯ୍ୟ କାହାର କୃଷକରିବା, କାହାର ଅଧ୍ୟାପନା କରିବା, କାହାର ଯୁଦ୍ଧ କରିବା, କାହାର ଅବା ସାହିତ୍ୟାଲୋଚନା କରିବା--ସେହିପରି ନାରୀ ପୁରୁଷର କାର୍ଯ୍ୟରେ ଭେଦାଭେଦ ରହିଥିବ । ଯେ ଯୁଦ୍ଧ କରିବ ସେ ଯେପରି ଅଧ୍ୟାପନାରେ ଅକ୍ଷମ, ଯେ ସାହିତ୍ୟାଲୋଚନା କରେ ସେ ଯେପରି କୃଷି କାର୍ଯ୍ୟରେ ଅକ୍ଷମ, ପୁରୁଷ ମଧ୍ୟ ସେହିପରି ନାରୀର କାର୍ଯ୍ୟ କରି ପାରିବେ ନାହିଁ ଏବଂ ନାରୀ ମଧ୍ୟ କେବେହେଁ ପୁରୁଷ ହୋଇ ପାରିବେ ନାହିଁ ।

ସଭ୍ୟ ସମାଜରେ କୃଷି କରିବା, ବିଦ୍ୟା ଶିକ୍ଷା କରିବା, ଶିଳ୍ପ ବାଣିଜ୍ୟ ପ୍ରଭୃତି ପ୍ରତ୍ୟେକ କାର୍ଯ୍ୟର ପ୍ରୟୋଜନ । ଏଥିରୁ ଗୋଟିକୁ ସୁଦ୍ଧା ବାଦଦେଲେ ଚଳିବ ନାହିଁ । କୃଷକ ଯେବେ କୃଷି କର୍ମ ନ କରେ ତେବେ ଟଙ୍କା ପ୍ରସ୍ତୁତର କାରଖାନା ରୂପ ଟଙ୍କାଶାଳର ସମସ୍ତ ଟଙ୍କା ଅଜାଡ଼ି ଦେଲେ ସୁଦ୍ଧା ଛଟାଙ୍କିଏ ଧାନ ମିଳିବ ନାହିଁ; ସେହିପରି

ସାହିତ୍ୟ, ଶିଳ୍ପ, ବାଣିଜ୍ୟ ପ୍ରଭୃତିର ଚର୍ଚ୍ଚା ତ୍ୟାଗ କଲେ ପୁନର୍ବାର ସେହି ବର୍ବରତାର ଯୁଗକୁ ଫେରିଯିବାକୁ ହେବ । ସୁତରାଂ ଏହା ଦେଖାଯାଉଅଛି ଯେ ପ୍ରତ୍ୟେକ ହିଁ ସମାଜର ଅପରିହାର୍ଯ୍ୟ ଅଙ୍ଗ, କାହାକୁ ତ୍ୟାଗକରି ସମାଜକୁ ପଙ୍ଗୁ କରାଯାଇ ପାରିବ ନାହିଁ । ବାମ ହସ୍ତ ଓ ଦକ୍ଷିଣ ହସ୍ତ ଉଭୟର ହିଁ ପ୍ରୟୋଜନ । ନର ଓ ନାରୀ ସମାଜର ଏହି ଯୋଡ଼ିଏ ବାହୁ ମଧ୍ୟରୁ ଯେବେ ଗୋଟିଏ ଦୁର୍ବଳ ହୁଏ, ତେବେ ସମାଜର ପଙ୍ଗୁତ୍ୱ କେବେହେଁ ଦୂର ହେବ ନାହିଁ ।

ଉଭୟର ସ୍ୱତନ୍ତ୍ର କର୍ତ୍ତବ୍ୟ ସମାଜର ମଙ୍ଗଳ ସକାଶେ ନିର୍ଦ୍ଦିଷ୍ଟ ହୋଇଅଛି । କାହାର ଦାୟିତ୍ୱ କମ ନୁହେଁ । ସମାଜରେ ନାରୀଜାତି ଉପରେ ଯେ କେତୋଟି ଗୁରୁତର କାର୍ଯ୍ୟର ଭାର ନ୍ୟସ୍ତ ରହିଅଛି ସେ କର୍ତ୍ତବ୍ୟରେ ଅବହେଳା କଲେ ସମଗ୍ର ମନୁଷ୍ୟ-ସମାଜର ସମୂହ କ୍ଷତି ନିଶ୍ଚିତ । ଆଜିକାଲି ବହୁ ନାରୀ ଅର୍ଥୋପାର୍ଜ୍ଜନ କରିଥାଆନ୍ତି ଏବଂ ଗ୍ରାସାଚ୍ଛାଦନ ସକାଶେ ପୁରୁଷର ମୁଖାପେକ୍ଷୀ ନ ହେଲେ ମଧ୍ୟ ଚଳିବ ଏହା ସେମାନେ ନିଶ୍ଚିତ ରୂପେ ପ୍ରମାଣ କରିଅଛନ୍ତି । ସନ୍ତାନ-ପାଳନ ପୁରୁଷର ଧର୍ମ ନ ହେଲେହେଁ ଅନେକ ସ୍ଥଳରେ ଯେପରି ମାତୃହୀନ ଶିଶୁକୁ ପିତା ଲାଳନ ପାଳନ କରିବାକୁ ବାଧ୍ୟ ହୁଅନ୍ତି, ସେହିପରି ନାରୀ ମଧ୍ୟ ଅନେକ ସ୍ଥଳରେ ବାଧ୍ୟ ହୋଇ ଅର୍ଥ ଉପାର୍ଜ୍ଜନ କରିପାରନ୍ତି; କିନ୍ତୁ କେବଳ ପୁରୁଷର ସମାନ ହେବାକୁ ଯେବେ ନାରୀ ଗୃହ ଛାଡ଼ି ପଥରେ ବୁଲନ୍ତି ତେବେ ଏହା ସତ୍ୟ ଯେ ନାରୀ କେବେହେଁ ପୁରୁଷ ହେବେ ନାହିଁ । ଏଥିରେ କେବଳ ନାରୀର ନାରୀତ୍ୱରହିଁ ଅପମାନ ଘଟିବ; କାରଣ ଅନୁକରଣ ପ୍ରବୃତ୍ତି ମନରେ ଜାଗ୍ରତ ହେବା ସଙ୍ଗେ ସଙ୍ଗେ ଯାହାକୁ ଅନୁକରଣ କରି ହେଉଅଛି ତାହାକୁ ଯେ ନିଜଠାରୁ ଶ୍ରେଷ୍ଠ ଜ୍ଞାନ କରି-ହେଉଅଛି ଏହା ସେତିକିବେଳେ ପ୍ରମାଣିତ ହେବ; ସୁତରାଂ ଏପରି

ଭାବରେ ନାରୀତ୍ୱର ଅପମାନ ନ କରି ଯେବେ ଅନୁକରଣ କରିବାକୁ ହୁଏ, ତେବେ ଜ୍ଞାନ ଓ ଗରିମାରେ ଯେଉଁମାନେ ପ୍ରାତଃସ୍ମରଣୀୟା, ସେହି ମହୀୟସୀ ମାନଙ୍କର ଆଦର୍ଶ ସମ୍ମୁଖରେ ରଖି ଚଳିବା ଉଚିତ ନୁହେ କି ?

ପ୍ରକୃତିର ପ୍ରୟୋଜନରେ ନାରୀ ଶାରୀରିକ, ମାନସିକ ଉଭୟ ବିଧ କୋମଳତାର ଅଧିକାରିଣୀ ହୋଇ ସନ୍ତାନପାଳନ ରୂପ ଗୁରୁଭାର ବହନ କରିଅଛନ୍ତି । ସ୍ନେହ, ପ୍ରେମ, ଦୟା, ମାୟା ପ୍ରଭୃତି କୋମଳ ବୃତ୍ତିଗୁଡ଼ିକ ପୁରୁଷାପେକ୍ଷା ନାରୀକୁ ଅଧିକ ପରିମାଣରେ ଆଶ୍ରୟ କରିଅଛି । ଏହି ସ୍ୱାଭାବିକ ଓ ସର୍ବବିଧ କୋମଳତା ଏହାହିଁ ପ୍ରମାଣ କରିଥାଏ ଯେ ନାରୀର ପ୍ରକୃତ କର୍ମକ୍ଷେତ୍ର ଗୃହରେ, ବାହାରରେ ନୁହେଁ । ଏ ବିଷୟରେ ଯେ ଯାହାର କର୍ତ୍ତବ୍ୟ ବାଛି ନେଲେ ଦ୍ୱନ୍ଦ୍ୱ ସହଜରେ ମେଣ୍ଟିବ । ଦେଶ କାଳ ପାତ୍ର ଅନୁସାରେ ଏଭଳି ସମୟ ଆସିଅଛି, ଯେଉଁ ସମୟରେ କେହି କାହାରିକୁ ଆଗେଇଯିବ ନାହିଁ, କେହି କାହାରିକୁ ପଛରେ ରହିବାକୁ ଦେବ ନାହିଁ, ବିଭିନ୍ନ କାର୍ଯ୍ୟ ମଧ୍ୟରେ ସମସ୍ତଙ୍କର ସମାନ ଅଧିକାର ରହିଥିବ ।

ରମଣୀମାନଙ୍କ ପ୍ରତି ଲେଖକର ନିବେଦନ ଏତିକି ଯେ, ଯେବେ ଅନୁକରଣ କରିବାକୁ ହେଲା ତେବେ ପୁରୁଷର ଅନୁକରଣ କାହିଁକି ? ଯେପରି "ପୁଂରକଂସା" ଶବ୍ଦଭଳି-ଯାହା ଅସମ୍ଭବ । ପୂର୍ବକାଳରୁ ଯେଉଁମାନଙ୍କ କଥା ଶୁଣି ଆସୁଅଛୁଁ ସେହି ଐତିହାସିକ ମହୀୟସୀ ରମଣୀମାନଙ୍କ ଆଦର୍ଶ ସମ୍ମୁଖରେ ରଖି ସେମାନେ ବରଣୀୟ ହେଉନ୍ତୁ ।

ବ୍ରହ୍ମ ବିଦ୍ୟାରେ ଗାର୍ଗୀ, ମୈତ୍ରେୟୀ, ଗଣନାରେ ଖନା ଓ ଲୀଳାବତୀ, ବୀରତ୍ୱରେ ଝାନ୍‌ସିର ରାଣୀ ଓ ଦୁର୍ଗାବତୀ ଏବଂ ସାହିତ୍ୟ-

କ୍ଷେତ୍ରରେ ବହୁ ମହିଳା ପୂର୍ବକାଳରେ ଥିଲେ ଏବଂ ବର୍ତ୍ତମାନ ମଧ୍ୟ ଅଛନ୍ତି ।

ଦେଶ ସକାଶେ ପ୍ରାଣ ଦେବାକୁ ପ୍ରସ୍ତୁତ ଏବଂ ପ୍ରାଣ ଦେଇ- ଅଛନ୍ତି ଏଭଳି କେତେ ଝାନ୍‌ସିର ରାଣୀ, ଲକ୍ଷ୍ମୀବାଈ, କେତେ ଗୃହବଧୂ ଅନ୍ତଃପୁରରେ ଥିଲେ ଏବଂ ଅଛନ୍ତି ଯେଉଁମାନଙ୍କୁ ନିଜର ପ୍ରକାଶ କରିବାର ପ୍ରୟୋଜନ ହୋଇନାହିଁ, ଅନ୍ତଃପୁରରେ ସ୍ୱାମୀ ପୁତ୍ରର ସେବାକରି ସାଧାରଣ ଭାବରେ ଜୀବନ ଯାପନ କରି ଯାଇଅଛନ୍ତି ଓ ଯାଉଅଛନ୍ତି । କିନ୍ତୁ ବିପ୍ଳବର ଝଡ଼ ଯେତେବେଳେ ବୋହିବ ସେତେବେଳେ ଆତ୍ମପ୍ରକାଶ କରିବ ।

ନାରୀର ପ୍ରକୃତ କର୍ମକ୍ଷେତ୍ର ଗୃହରେ, କିନ୍ତୁ ଦେଶ କାଳ ପାତ୍ର ଅନୁସାରେ ପ୍ରୟୋଜନ ହେଲେ ସେହି କର୍ମକ୍ଷେତ୍ର ଗୃହ ଛାଡ଼ି ବାହାରକୁ ବହୁ ଦୂରଦୂରାନ୍ତରେ ପ୍ରସାରିତ ହୋଇପାରେ ଏଥିରେ ଅବଶ୍ୟ ମତଭେଦ ହେବ ନାହିଁ ।

---

# ଶରାଚରିତ ବିବାହ

ଯେଉଁ ଦିନରୁ ମନୁଷ୍ୟ ମଧ୍ୟରେ ବିବାହ ପ୍ରଥାର ସୃଷ୍ଟି ହୋଇଅଛି, ସେହିଦିନଠାରୁ ସକଳ ଦେଶର ସକଳ ସମାଜରେ ପୁରୁଷ ଓ ନାରୀର ବିବାହର ଅଦାନ ପ୍ରଦାନ ଚଳି ଆସୁଅଛି ଏବଂ ସକଳ ସମାଜରେହିଁ ବିବାହ ପ୍ରଥା ପ୍ରଚଳିତ ରହିଅଛି । ଅତଏବ ଶିକ୍ଷିତାଭିମାନୀ ସଭ୍ୟ ଭବ୍ୟ ସମାଜରେ ଯେପରି, ମୂର୍ଖ ନିରକ୍ଷର ଅସଭ୍ୟ ସମାଜରେ ମଧ୍ୟ ସେହିପରି ବିବାହ ବନ୍ଧନରୁ ମୁକ୍ତ ନାହିଁ । ଅବଶ୍ୟ ସକଳ ସମାଜରେହିଁ ଏହାର ବ୍ୟତିକ୍ରମ ରହିଅଛି । ସକଳ ସମାଜରେହିଁ ଦୁଇ ଗୁରିଜଣ ବିବାହ କରନ୍ତି ନାହିଁ, ସକଳ

ସମାଜରେହିଁ ଚିରକୁମାର ଓ ଚିରକୁମାରୀ ଅଛନ୍ତି । ଯେଉଁ ମାର୍କିନ ସମାଜ ଏକାଳରେ ଜଗତରେ "ସଭ୍ୟତାର" ଚରମଶିଖରରେ ଉନ୍ନତ ବୋଲି ପ୍ରତୀତ୍ୟ ଗ୍ରହଣ କରିଥାଏ, ଯେଉଁ ମାର୍କିନ ସମାଜରେ ବିବାହ ବନ୍ଧନ ବୋଲି ବହୁ ଯୁବକ ଯୁବତୀ ଦାମ୍ପତ୍ୟ ଜୀବନ ଯାପନରେ ଅସମ୍ମତ, ସେହି ମାର୍କିନ ଦେଶରେ ମଧ୍ୟ ଗିର୍ଜ୍ଜା ଅଛି, ଗିର୍ଜ୍ଜାରେ ବିବାହ ମଧ୍ୟ ହୁଏ, ପରନ୍ତୁ ଅନ୍ୟରୂପେ ମଧ୍ୟ ପୁରୁଷ ଓ ନାରୀ ପରସ୍ପର ବିବାହ ବନ୍ଧନରେ ଅବଦ୍ଧ ହୁଅନ୍ତି ।

ଏ ସମ୍ବନ୍ଧରେ ପ୍ରବନ୍ଧ ଲେଖକ ଆମେରିକାର ଗୋଟିଏ ପ୍ରସିଦ୍ଧ ସମ୍ବାଦପତ୍ରରେ ପ୍ରବନ୍ଧଟିଏ ପଢ଼ିଥିଲି । ସେଠାର ବିଚାରପତି ଜର୍ଜ ଏପେଲ ମହୋଦୟ ସେହି ପତ୍ରରେ ଯାହା ଲେଖିଅଛନ୍ତି ତାହା ସମସ୍ତଙ୍କର ପ୍ରଣିଧାନ ଯୋଗ୍ୟ । ସେ ଆଧୁନିକ ଯୁଗର ବିବାହ-ବିରୋଧୀ ଦଳର କଥା ଆଦୌ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ବିବାହବିରୋଧୀ ଚିରକୁମାର ଦଳ କହିଥାଅନ୍ତି, "ସମାଜ ଯେତିକି ଉନ୍ନତ ପଥରେ ଅଗ୍ରସର ହେଉଅଛି, ସେତିକି ବିବାହ ସଂସ୍କାରଟିକି ତାହାଁର ଗତି ସହିତ ସାମଞ୍ଜସ୍ୟ ରଖି ଅଗ୍ରସର ହୋଇ ପାରୁନାହିଁ ।" ବସ୍ତୁତଃ ବିବାହ କ୍ରମଶଃ ଯେପରି ନିହାତି ପୁରୁଣା ଓ ଅପ୍ରୟୋଜନୀୟ ହୋଇ ପଡ଼ୁଅଛି । ବହୁ ଯତ୍ନ କିମ୍ବା ଚେଷ୍ଟାରେ ଯେଉଁ ଘୋଡ଼ା କିମ୍ବା କୁକୁରଙ୍କୁ ଘରେ ପାଳନ କରାଯାଏ, ସେଗୁଡ଼ିକ ଯେପରି ବୃଦ୍ଧ ହେଲେ ଆଉ କୌଣସି କାର୍ଯ୍ୟରେ ଲାଗନ୍ତି ନାହିଁ—ସେମାନଙ୍କର ପ୍ରୟୋଜନ ଯେପରି ଆଦୌ ଅନୁଭୂତ ହୁଏ ନାହିଁ, ସେହିପରି ମନୁଷ୍ୟର ଆଦିମ ସମାଜରେ ପ୍ରଚଳିତ ବିବାହ ପ୍ରଥାଟିକି ବର୍ତ୍ତମାନ କାଳରେ କାର୍ଯ୍ୟକୁ ଆସୁନାହିଁ—ଏହାର ପ୍ରୟୋଜନ ଆଦୌ ଅନୁଭୂତ ହେଉନାହିଁ । ହୁଏତ ସମାଜର ଅତୀତ ଜୀବନରେ ବିବାହର ପ୍ରୟୋଜନ ଅନୁଭୂତ ହୋଇଥିଲା । କିନ୍ତୁ

ଏହାବୋଲି ବର୍ତ୍ତମାନ କାଳରେ ଏହାର ପ୍ରୟୋଜନ ଅଛି, ଏହା ସ୍ୱୀକାର କରିବୁ କାହିଁକି ?

ଜର୍ଜ ଏପେଲ କହନ୍ତି, "ଏହି ଯୁକ୍ତି ଏକାବେଳକେ ଅସାର, ଏହା କେବଳ ଦାମ୍ଭିକର ଯୁକ୍ତି ମାତ୍ର ବରଂ ମୋର ମନେହୁଏ ଆମ୍ଭମାନଙ୍କର ବର୍ତ୍ତମାନ ସମାଜ ଯେପରି ଗଠିତ ତହିଁରେ ବିବାହ ପୂର୍ବାପେକ୍ଷା ଅଧିକ ପ୍ରୟୋଜନୀୟ । ପ୍ରାଚୀନ କାଳର ଯେଉଁ ଆଦର୍ଶ ଅନୁସାରେ ବିବାହ ସଂସ୍କାର ସମ୍ପନ୍ନ ହୁଏ ତାହା ବର୍ତ୍ତମାନ ସୁଦ୍ଧା ସମାଜ ପକ୍ଷରେ ବିଶେଷ ମଙ୍ଗଳକର ଏବଂ ଅବଶ୍ୟ ପ୍ରୟୋଜନୀୟ ।"

କାହିଁକି ପ୍ରୟୋଜନୀୟ ସେ ସମ୍ବନ୍ଧରେ ସେ କହନ୍ତି, ବର୍ତ୍ତମାନ ଯୁଗରେ ଶିକ୍ଷାର ବିସ୍ତାର ହୋଇଅଛି । ପ୍ରାୟ ପ୍ରତ୍ୟେକ ସଂସାରରେ ବର୍ତ୍ତମାନ ଗୃହସ୍ଥର ଅବସ୍ଥା ସ୍ୱଚ୍ଛଳ, ଦାମ୍ପତ୍ୟ ଏବଂ ପାରିବାରିକ ଜୀବନର ଗଣ୍ଡୀ ବର୍ତ୍ତମାନ ପ୍ରଭୂତ ପରିମାଣରେ ବଢ଼ି ଯାଇଅଛି । ପତ୍ନୀକୁ ଘରର ଦାସୀ ପଣରୁ ଅବ୍ୟାହତି ଦିଆ ଯାଇଅଛି, ମାତୃମଙ୍ଗଳ ଓ ଶିଶୁମଙ୍ଗଳ ସମ୍ବନ୍ଧରେ ମନୁଷ୍ୟର ଅଭିଜ୍ଞତା ବଢ଼ିଅଛି, ପତି ପତ୍ନୀଙ୍କ ମଧ୍ୟରେ ବର୍ତ୍ତମାନ ବନ୍ଧୁତ୍ୱ ଓ ସଖ୍ୟଭାବ ସୁପ୍ରତିଷ୍ଠିତ ହୋଇଅଛି—ଗୋଟିଏ କଥାରେ ସଂସାରରେ ସ୍ୱାମୀ ସ୍ତ୍ରୀର ସମ୍ବନ୍ଧ ବର୍ତ୍ତମାନ ପୂର୍ବାପେକ୍ଷା ଅଧିକ ମଧୁମୟ କରାଯାଇ ଅଛି । ବର୍ତ୍ତମାନ ସ୍ୱାମୀ ସ୍ତ୍ରୀ ଇଚ୍ଛାକଲେ ବାହାରର ଆନନ୍ଦ ଉପଭୋଗ କରିପାରନ୍ତି, କାରଣ ଉଭୟେହିଁ ଶିକ୍ଷିତ, ଉଭୟେହିଁ ମାର୍ଜିତରୁଚି, ଉଭୟେହିଁ ବ୍ୟାୟାମରେ ଅଭ୍ୟସ୍ତ, ଉଭୟେହିଁ କ୍ରୀଡ଼ା କୌତୁକରେ ଦକ୍ଷ । ବର୍ତ୍ତମାନ କାଳରେ ଯେଉଁମାନେ ବିବାହ କରିବାକୁ ଅସ୍ୱୀକାର କରନ୍ତି ସେମାନେ ମିଛରେ ଶିକ୍ଷା ଓ ସଭ୍ୟତାର ଗର୍ବ କରିଥାଆନ୍ତି । ସେମାନଙ୍କର ଅତିରିକ୍ତ ଶିକ୍ଷା ଆଡ଼ମ୍ବରର ଦେଖଣା,

ସେମାନେ ଅସାର ବିଷୟରେ ସ୍ଫୂର୍ତ୍ତି ପ୍ରାପ୍ତି ଆଶାରେ କର୍ତ୍ତବ୍ୟକୁ ଏଡ଼ି ଦେବାକୁ ଚାହାନ୍ତି, ସେମାନଙ୍କର "ସତ୍‌ସାହସ" କାପୁରୁଷତାର ନାମାନ୍ତର ମାତ୍ର ।

ଜର୍ଜ ଏପେଲ୍ ବିବାହ ବିରୋଧୀ ମାନଙ୍କୁ ସମାଜର ଅନିଷ୍ଟ-କାରକ ବୋଲି କହିଅଛନ୍ତି । ସେ କହନ୍ତି, ଯେଉଁମାନେ ଶସ୍ତାରେ, ବିନାଶ୍ରମ, ବିନା କଷ୍ଟ ଏବଂ ବିନା ବିପଦରେ ଆମୋଦ କମ୍ବା ସ୍ଫୂର୍ତ୍ତି ଉପଭୋଗ କରିବାକୁ ଚାହାନ୍ତି, ଯେଉଁମାନେ କୌଶଳରେ ନୀଚ କାମ-ପ୍ରବୃତ୍ତି ଚରିତାର୍ଥ କରିବାକୁ ଇଚ୍ଛୁକ, ଅଥଚ ତାହାର ପରିଣାମ ଫଳ ଏଡ଼େଇ ଦେବାକୁ ଯତ୍ନଶୀଳ ସେମାନେହିଁ ବିବାହର ଆଦର୍ଶ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି ।

କୌଣସି ଆଦର୍ଶ ଅନୁସରଣ ନ କଲେ ଗୃହସ୍ଥ ପରିବାର ତିଷ୍ଠି ନ ପାରେ । ପତି ପତ୍ନୀ ମଧ୍ୟରେ ପରସ୍ପରର କ୍ଷମାର ଭାବ ନ ଥିଲେ ଅଥବା ସମାଧାନର ଭାବ ନ ଥିଲେ ସଂସାର ଅଚଳ ହୁଏ । ସର୍ବୋପରି ସଂସାରରେ ଆତ୍ମ ସଂଯମର ଅଭ୍ୟାସ ନଥିଲେ ସଂସାରରେ ସୁଖ ଶାନ୍ତି ନ ଥାଏ—ଏହାହିଁ ଜର୍ଜ ଏପେଲଙ୍କର ଅଭିମତ । ସେ କହନ୍ତି ବର୍ତ୍ତମାନ ଯୁଗର ଏକ ଶ୍ରେଣୀର ଯୁବକ ଯୁବତୀ ଇଚ୍ଛାପୂର୍ବକ ସଂଯମର ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଅଛନ୍ତି ଓ କରୁଅଛନ୍ତି । ସେମାନେ ସଂଯମକୁ Puritanism ବୋଲି ବିଦ୍ରୂପ କରନ୍ତି । ଏହି ହେତୁରୁ ମନେହୁଏ ଯେ ସେମାନେ ବିବାହର ବନ୍ଧନ ଶିଥିଳ କରିବାର ଯେଉଁ ଆନ୍ଦୋଳନ ଉପସ୍ଥିତ କରିଅଛନ୍ତି ଏହା ମୂଳରେ ଆଉ କିଛି ନାହିଁ. କେବଳ ପୁରୁଷ ଓ ନାରୀଙ୍କୁ ସଂଯମ ଓ ଦାୟିତ୍ୱର ପ୍ରଭାବରୁ ମୁକ୍ତ କରିବାର ପ୍ରବଳ ଆକାଙ୍‌କ୍ଷା ଏହା ମଧ୍ୟରେ ରହିଅଛି ।

ଜର୍ଜ୍ଜ ଏପେଲ୍ ଗୋଟିଏ ଦୃଷ୍ଟାନ୍ତ ଉଦ୍ଧୃତ କରି ଅଛନ୍ତି । ସେ କହନ୍ତି, "ଦିନେ ମୋ ନିକଟରେ ଏକ ଯୁବକ ଯୁବତୀର ମୋକଦ୍ଦମା

ଉପସ୍ଥିତ ହେଲା । ପିତୃତ୍ୱର ଦାୟିତ୍ୱ ସମ୍ବନ୍ଧରେ ହିଁ ଏହି ମାମଲା ।
ସେମାନେ ଉଭୟେହିଁ ଜିଜ୍ଞାସିତ ହୋଇ କହିଲେ—ଆଧୁନିକ
ମନସ୍ତତ୍ତ୍ୱର ନିୟମ ଅନୁସାରେ ଯୁବକ ଯୁବତୀ ଇନ୍ଦ୍ରିୟ ତୃପ୍ତି
ସାଧନର ସମ୍ପୂର୍ଣ୍ଣ ଅଧିକାରୀ, କିନ୍ତୁ ତାହାର ଦାୟିତ୍ୱ ଗ୍ରହଣ
କରିବାକୁ ବାଧ୍ୟ ନୁହନ୍ତି । କି ଅଦ୍ଭୁତ ମନସ୍ତତ୍ୱ ? ମୁଁ ପ୍ରଶ୍ନ କଲି
'ତୁମ୍ଭେମାନେ ପ୍ରଚଳିତ ପ୍ରଥାରେ ବିବାହ କରନାହିଁ କାହିଁକି ?'
ଯୁବକ କହିଲା, 'ବର୍ତ୍ତମାନ କାଳରେ ମନୁଷ୍ୟ ବିବାହ କରିବା
ଦୃଷ୍ଟିକୋଣେ ଅବସ୍ଥାପନ୍ନ ନୁହେ, ସେ କିପରି ପ୍ରାଚୀନ କାଳର ପ୍ରଥାରେ
ଘର ସଂସାର କରିବ ?' ମୁଁ ପଚାରିଲି 'ପ୍ରାଚୀନ କାଳର ଘର
ସଂସାର ସମ୍ବନ୍ଧରେ ତୁମ୍ଭର ଧାରଣା କଅଣ ?' ସେ ଯାହା ଉତ୍ତର
ଦେଲେ ତହିଁରେ ବୁଝିଲି ତାହାର ପ୍ରାଚୀନ ଯୁଗର ଘରସଂସାରର
ଧାରଣା ଏକାବେଳକେ ଭ୍ରମାତ୍ମକ । ତାହାର ଘର ସଂସାରର
ଧାରଣା—ଅନେକ ଟଙ୍କା ଭଡ଼ାର ଘର, ବହୁମୂଲ୍ୟ ତୈଜସ ପତ୍ର,
ମୋଟର ଗାଡ଼ି, ପଛୀ ପଟେର କୁଡ଼ି ଓ ଟୋପି, ଭଲ ଆହାର ଏବଂ
ବ୍ୟୟସାଧ୍ୟ ଆମୋଦ ପ୍ରମୋଦ ।" କିନ୍ତୁ ଏହାହିଁ କଅଣ ପ୍ରାଚୀନ
ଯୁଗର ଘର ସଂସାରର ନମୁନା ? ମୋହର ଯେତେଦୂର ମନେ
ହୁଏ ପ୍ରାଚୀନ ଯୁଗରେ ସ୍ତ୍ରୀ ପୁରୁଷ ଆୟ ବୁଝି ବ୍ୟୟ କରି ସଂସାର
ରଚନା କରୁଥିଲେ । ମିତବ୍ୟୟୀ ହୋଇ ସଂସାର ଚଳାଉଥିଲେ । ଏହା
ଉତ୍ତାରୁ ଅବସ୍ଥାର ଉନ୍ନତ ହେଲେ କିଛି କିଛି ବିଳାସ ଉପଭୋଗ
କରୁଥିଲେ । କିନ୍ତୁ ବର୍ତ୍ତମାନ କାଳରେ ସେମାନେ ଘର ସଂସାର
ପତ୍ତନ ସଙ୍ଗେ ସଙ୍ଗେ ମୋଟର ଏବଂ ରେଡ଼ିଓ ଲୋଡ଼ନ୍ତି । ଏକା-
ବେଳକେ ଆକାଶର ଚନ୍ଦ୍ର ଧରିବାକୁ ଇଚ୍ଛୁକ—ଏ ଅବସ୍ଥାରେ
ସଂସାରରେ ସୁଖଶାନ୍ତି ଆସିବ କେଉଁଠାରୁ ?

ଏ କଥା ଠିକ ଭଲ ଦେଖିବା କର୍ତ୍ତବ୍ୟ । ଆଜକାଲ ଆମ୍ଭମାନଙ୍କ ଦେଶରେ ଯେପରି ବିଳାସ ଲାଳସା ଦେଖା ଯାଉଅଛି ତହିଁରେ ସତର୍କ ହେବା ଉଚିତ ନୁହେଁ କି ? ଆମ୍ଭମାନଙ୍କ ଦେଶରେ ମଧ୍ୟ ପ୍ରତୀଚ୍ୟର ଅନୁକରଣରେ ବିବାହର ଧାରଣା ବିଗିଡ଼ି ଯାଉଅଛି । ସୁତରାଂ ଜଜ୍ ଏପେଲ ତାହାଙ୍କର ଅଭିଜ୍ଞତା ଅନୁସାରେ ଯାହା କହିଅଛନ୍ତି ତାହା ଆମ୍ଭମାନଙ୍କର ସର୍ବଦା ପ୍ରଣିଧାନ ଯୋଗ୍ୟ । ସେ କହନ୍ତି, ୧୯୧୪ ସାଲ ଠାରୁ ସଂସାର ଯାତ୍ରାର ଖରଚ ଶତକଡ଼ା ୫୭୫୯ ଲେଖାଏଁ ବଢ଼ିଅଛି । କିନ୍ତୁ ସଙ୍ଗେ ସଙ୍ଗେ ଲୋକଙ୍କର ଆୟ ମଧ୍ୟ ଶତକଡ଼ା ୫୧୦୦୯ ଲେଖାଏଁ ବଢ଼ିଅଛି— ସୁତରାଂ ଏତଦୁଭୟ ମଧ୍ୟରେ ସାମଞ୍ଜସ୍ୟ ସାଧନ କରି ସଂସାର ମାର୍ଗରେ ଚାଲିଲେ ଦମ୍ପତୀଙ୍କୁ ବିପଦଗ୍ରସ୍ତ ହେବାକୁ ପଡ଼ିବ ନାହିଁ । ଆୟ ବୁଝି ବ୍ୟୟ କଲେ ବିବାହିତ ଜୀବନ ବିଷମୟ ଫଳ ଉତ୍ପାଦନ କରିବ ନାହିଁ । ବିଳାସ ଲାଳସା ସଂଯତ କରି ପାରିଲେ ଅର୍ଥ ଅନାଟନ ଭୟରେ ଘର ସଂସାର ପତନର ଆଶଙ୍କା ଲୋପ ପାଇପାରେ । ଯେଉଁମାନେ ଘୋର ବିଳାସୀ ସେଇମାନେହିଁ ବିବାହ କରିବାକୁ ଭୀତ ହୁଅନ୍ତି—ସେମାନେ କହନ୍ତି ବିବାହ କରି ଘର ସଂସାର ସମ୍ଭାଳିବା କଅଣ ମୁହଁର କଥା ? ଏହା ମନୁଷ୍ୟ-ସାମର୍ଥ୍ୟର ସାଧ୍ୟାତୀତ; କିନ୍ତୁ ଯେଉଁମାନେ ଯଥାର୍ଥ ମନୁଷ୍ୟ ଭଳି ମନୁଷ୍ୟ, ଯେଉଁମାନେ ସଂଯମରେ ଅଭ୍ୟସ୍ତ, ଯେଉଁମାନେ ସୁଖ ଓ ବିଳାସ ଉପଭୋଗ ସଙ୍ଗେ ସଙ୍ଗେ ଦାୟିତ୍ୱର ବୋଝ ସ୍କନ୍ଧରେ ଗ୍ରହଣ କରିବାକୁ ପ୍ରସ୍ତୁତ ସେମାନେ ବିବାହକୁ ଭୟ କରିବେ ନାହିଁ ।

ଜଣେ ସଂସାର ବିରାଗୀ ସାଧୁ କହିଥିଲେ :—

"ବିବାହ ଏକ ବ୍ୟାଧି ହେଁ ମାଂସ କଟ୍ କଟ୍ ଖାଇ
ଢାକ ଢୋଲ ବଜାୟକେ ବେଢ଼ି ପରଲୋକୋ ଯାଇ ।"

ଏହା ଅବଶ୍ୟ ବୈରାଗୀର କଥା । ସଂସାରରେ ଏ କଥା ସହୃତ ସମ୍ପର୍କ ମାତ୍ର ନାହିଁ । ଭାରତର ଜଣେ ପ୍ରଧାନ ମନୀଷୀ ନିମ୍ନରୂପେ ସ୍ତ୍ରୀର ବ୍ୟାଖ୍ୟା କରିଛନ୍ତି । ସେ କହନ୍ତିଃ—ସ୍ତ୍ରୀ ସ୍ୱାମୀଙ୍କର କେବଳ ବିଳାସବସ୍ତୁ ନୁହନ୍ତି, ସ୍ତ୍ରୀ ସ୍ୱାମୀଙ୍କର (୧) ପୁତ୍ରର—ଜନନୀ, (୨) ଗୃହର—ଗୃହିଣୀ, (୩) କ୍ଷୁଧା ତୃଷାରେ—ତୃପ୍ତିଦାୟିନୀ (୪) ସୁଖାଳାପରେ—ପରିତୋଷିଣୀ, (୫) ମର୍ଯ୍ୟାଦା ପାଳନରେ—କୁଟୁମ୍ବିନୀ, (୬) ଉପଦେଶରେ—ଅନ୍ତେ ବାସିନୀ, (୭) ସେବାରେ—ଆଜ୍ଞାକାରିଣୀ, (୮) ବିଷୟ କର୍ମ ପ୍ରଭୃତିରେ—ମନ୍ତ୍ରିଣୀ,(୯) ସତ୍‌କର୍ମରେ—ସହକାରିଣୀ, (୧୦) ଉତ୍‌ପଥ ଗମନରେ—ବନ୍ଧନୀ, (୧୧) ବିପଦ ତରଙ୍ଗରେ—ତରିଣୀ, (୧୨) ଶୋକ ବ୍ୟଥାରେ—ସନ୍ତାପ ହାରିଣୀ, (୧୩) ରୋଗ ଶଯ୍ୟାରେ—ସ୍ୱାସ୍ଥ୍ୟ ରକ୍ଷିଣୀ, (୧୪) କ୍ଲେଶ ପରମ୍ପରାରେ—ଶକ୍ତି ବିଧାୟିନୀ, (୧୫) ଦେବଗୃହରେ—ଶୁଭାର୍ଥିନୀ ଓ (୧୬) ସମଗ୍ର ଜୀବନ ପଥରେ—ସହାୟ ରୂପିଣୀ ।

---

## ଏକାକୀ ଓ ପ୍ରତିବେଶୀ

ଜୀବନରେ ଏଭଳି ମୁହୂର୍ତ୍ତ ଆସିଯାଏ—ସମସ୍ତଙ୍କର ହିଁ ଯେତେବେଳେ ଲୋକର ସଂସ୍ପର୍ଶ ଅସହ୍ୟ ବୋଧ ହୁଏ, ମନୁଷ୍ୟ ସେତେବେଳେ ଏକାକୀ ରହିବାକୁ ଭଲପାଏ । ଏ ସମୟରେ ମନେ ହୁଏ—ଜୀବନଟା ଯେପରି ପୂର୍ଣ୍ଣ ହୋଇ ଗଲାଣି—ଆଶା, ସାଧ, ବାସନା, ସ୍ୱପ୍ନ ପ୍ରଭୃତି ଛିନ୍ନ ଛିନ୍ନ ହୋଇ ଝଡ଼ି ପଡ଼ିଲାଣି—ଗୁରୁଅଡ଼େ ଯେପରି ବିସ୍ମୃତିର ଅକୂଳ ସମୁଦ୍ର ଗର୍ଜ୍ଜନ କରୁଅଛି । ନିଜର ବ୍ୟର୍ଥତା ଓ ନୈରାଶ୍ୟ ମନ ମଧ୍ୟରେ ଯେପରି ମରୁଭୂମି ଗଢ଼ିଥାଏ । ଧିକ୍‌କାର ଗ୍ଳାନିରେ ମନ ସେତେବେଳେ ଭରିଯାଏ ।

ସମସ୍ତଙ୍କର ଯେ ଏ ଭଳି ହୁଏ ତାହା ନୁହେ । ଏଭଳି ଲୋକ ଅଛନ୍ତି ଯେଉଁମାନେ ଶତ ବ୍ୟର୍ଥତାରେ ସୁଦ୍ଧା ଆତ୍ମଧିକ୍କାର ଜାଣନ୍ତି ନାହିଁ । ସେମାନେ ବୁଝନ୍ତି ନିଜର ଦୋଷ କିମ୍ବା ଅବିମୃଷ୍ୟ-କାରିତାରୁ ବ୍ୟର୍ଥତା ଘଟିଅଛି । ନିଜର ମନକୁ ପ୍ରବଳ କରି ଏମାନେ ଶକ୍ତି ସଂଗ୍ରହ କରନ୍ତି—ଅଧିକ ବିପୁଳତର ଉଦ୍‌ଯୋଗରେ କର୍ମ-ସାଗରକୁ ଡେଇଁ ପଡ଼ନ୍ତି । ମନରେ ଏହି ଆଶା ପୋଷଣ କରନ୍ତି, ଆଜି ହେଲି ନାହିଁ କାଲି ଅବା ହୋଇ ପାରିବ ।

ଜଣେ ପାଶ୍ଚାତ୍ୟ ଦାର୍ଶନିକ ସ୍ଥାନାନ୍ତରରେ ଲେଖି ଅଛନ୍ତି, ଏ ଭଳି ବ୍ୟର୍ଥତାରେ ଆମ୍ଭମାନଙ୍କର ଆତ୍ମାଭିମାନ ପ୍ରପୀଡ଼ିତ ହୁଏ, କ୍ଷୁଣ୍ଣ ହୁଏ—ଆତ୍ମବିଶ୍ୱାସ ଓ ଆତ୍ମମର୍ଯ୍ୟାଦା ବିଲୁପ୍ତ ହୁଏ ।

ଏହା ଘଟିଲେ ଜୀବନରେ ଆଶା ରହିବ କିପରି ? ଜୀବନ ବିଡ଼ମ୍ବନାରେ ପରିଣତ ହୁଏ । ବ୍ୟର୍ଥତାକୁ ଘଟନାଚକ୍ର କିମ୍ବା ଅଦୃଷ୍ଟ-ଦୋଷ ବୋଲି ଉଡ଼ାଇ ଦେଲେତ ଚଳିବ ନାହିଁ—ନିଜର ଦୋଷରୁ ଘଟିଅଛି ଭାବି, ସେ ଦୋଷକୁ ମାରି ଦେଇ ସତର୍କ ଭାବରେ ପୁଣି କାର୍ଯ୍ୟ କରିବାହିଁ କର୍ତ୍ତବ୍ୟ ।

ବ୍ୟର୍ଥତାର କାରଣ ଯେବେ ସନ୍ଧାନ କରି ନ ପାରେଁ ଭବିଷ୍ୟତ୍-ସମ୍ଭାବନା କ୍ଷୀଣ ହେବ ଏବଂ ମନକୁ ପ୍ରବୋଧ ଦେଇ ବ୍ୟର୍ଥତା ସକାଶେ ଯେବେ ଅପରକୁ କିମ୍ବା ଅଦୃଷ୍ଟ ଓ ଘଟନାଚକ୍ରକୁ ଦାୟୀ କରେଁ ତେବେ ଲୋକାଳୟରେ ବାସ କରିବାହିଁ କଠିଣ ହେବ ।

ଏହି ଏକାନ୍ତକୁ ଧୁଣ୍ଡି ଛାଡ଼ା ହେବା—ଯାହାକୁ ଇଂରାଜମାନେ କହନ୍ତି "ଆଇସୋଲେସନ" ( Isolation )—ଏହା ଠିକ୍ ଆମ୍ଭ-ମାନଙ୍କର ବୈରାଗ୍ୟ ନୁହେଁ—ଏହାର ନାମ "ଏକଷେଣ୍ଡିଆ ଭାବ" । ଏ ଭାବରେ ମନ ବିରୂପ—ତିକ୍ତ ଥାଏ—ଦୁନିଆ ଉପରେ ଅଦ୍ଭୋଶ-

ପୂର୍ଣ୍ଣ, ସୁତରାଂ ନିଜର ବିଷରେ ମନୁଷ୍ୟ ଏ ଅବସ୍ଥାରେ ନିଜେ ପୋଡ଼ି ପାଉଁଶ ହୋଇଯାଏ ।

ବ୍ୟର୍ଥତା ଘଟିଲେ କୋଣକୁ ଯାଇ ଆଶ୍ରୟ ନେବା ଉଚିତ ନୁହେ । ଏଥିରେ ଏତିକି ଭାଳିବାକୁ ହେବ, ଯେଉଁମାନେ ସଫଳ ସେମାନଙ୍କଠାରୁ ତୁମ୍ଭେ ସାନ ନୁହଁ—ତୁମ୍ଭର ଯେଉଁ ବ୍ୟର୍ଥତା, ଏହା ତୁମ୍ଭର ବୁଝିବାର ଭ୍ରମ ମାତ୍ର । ସେ ଭ୍ରମ ଦୂରକର ପୁଣି ଚାଲ, କାହିଁକି ବ୍ୟର୍ଥତା ଘଟିବ ? ଅନ୍ୟର ସମ୍ପୂର୍ଣ୍ଣ ବଞ୍ଚାଇ ଚାଲିବାରେ ନିଜର କ୍ଷତି ହେବ, ଅପରର ନୁହେ ।

ଏକାନ୍ତରେ କଅଣ ନିରାପଦରେ ଅଛ ବୋଲି ଭାବୁଥାଅ ? ଏ ଭାବରେ ନିଜକୁ ତୁମ୍ଭେ ସବୁଠାରୁ ସାନ ବୋଲି ଭାବୁଅଛ—ଏଥିରେ ତୁମ୍ଭର ସର୍ବନାଶ ଘଟୁଅଛି । ଲୋକଙ୍କ ନିକଟରେ ତୁମ୍ଭର ଅଶାନ୍ତି ଲୁଚାଇ ରଖିଲେ କଅଣ ହେବ, ତୁମ୍ଭ ମନ ସଙ୍ଗରେ ତୁମ୍ଭେ କଅଣ ଛଳନା କରି ପାରିବ ? ତୁମ୍ଭ ମନରେ କେତେ ଅଶାନ୍ତି ତାହା ତୁମେ ନିଷ୍ଚୟହିଁ ଜାଣ । ସେ ଜ୍ୱାଳା ତୁମ୍ଭଙ୍କୁ କେବେହେଁ ଛାଡ଼ିବ ନାହିଁ । ସୁତରାଂ ଏକାନ୍ତରେ ସୁଖ କାହିଁ ?

ଦୁଃଖ ଓ ଅଶାନ୍ତି ଯେବେ ଜୟ କରିବାକୁ ମନ ବଳାଅ, ତେବେ ଲୋକ ସଂସର୍ଗକୁ ବାହାର ହୁଅ—ସେମାନଙ୍କ ସଙ୍ଗରେ ହାସ୍ୟାଳାପ କର, ମନରେ ଶାନ୍ତି ଓ ଶକ୍ତି ମିଳିବ ଏବଂ ଅଶାନ୍ତିର ମାତ୍ରା ମଧ୍ୟ କମିଯିବ ।

ମନର ଅଶାନ୍ତି ସକାଶେ ଲୋକଙ୍କ ସହିତ ଦେଖା ହେଲେ ଯେବେ କଥା ନ କୁହ, କିମ୍ବା ସେମାନଙ୍କ ପ୍ରତି ମନୋଯୋଗୀ ନହୁଅ, ତାହା ହେଲେ ସେମାନେ ତୁମ୍ଭଙ୍କୁ ବର୍ଜ୍ଜନ କରି ଚଳିବେ । ବନ୍ଧୁ, ଆତ୍ମୀୟ ସ୍ୱଜନ କିମ୍ବା ପ୍ରତିବେଶୀଙ୍କର ସ୍ନେହ ଓ ମାୟାରୁ ବଞ୍ଚିତ ହେବ । ସେମାନେ ତୁମ୍ଭର ଛାଡ଼ ଛାଡ଼ ଭାବରେ ତୁମ୍ଭଙ୍କୁ

ଅଯୋଗ୍ୟ ଭଳି ତୁମ୍ଭ ନିକଟକୁ ଆସିବେ ନାହିଁ । ମନର ଦୁଃଖ ଓ ଅଶାନ୍ତି ସକାଶେ ଯେ ତୁମ୍ଭେ ନୀରବ ରହିଥାଅ, ସେମାନେ ଏହା ବୁଝି ପାରିବେ କି ?

ସ୍ୱଚ୍ଛନ୍ଦ ରହିବାର ଅର୍ଥ—ନିଜକୁ ସାନ ବୋଲି ଭାବିବା । କାହିଁକି ତାହା ଭାବିବ ? କର୍ମ ଜଗତରେ ଜୟ ପରାଜୟ ଏକ ସଙ୍ଗରେ ଗ୍ରଥିତ । ନିଜକୁ କାହିଁକି ସାନ ବୋଲି ଭାବିଥାଅ ? ଦେହର ଶକ୍ତିରେ କିମ୍ବା ମନର ଶକ୍ତିରେ ସାନ ଏହା ନିଜର ମନକୁ ପଚାରି ବୁଝିବ । ଦେଖିବ ତଳକୁ ଚାଲି ମନେ କରି କଷ୍ଟ ଭୋଗ କରୁଅଛ । ସାନ ବୋଲି ଭାବିବା କେବଳ କଳ୍ପନା ମାତ୍ର, ବାସ୍ତବ ସଙ୍ଗରେ ତାହାର ସମ୍ପର୍କ ଅତି କମ ।

ଲୋକେ କଅଣ କହିବେ ବୋଲି ଭୀତ ହେବ ନାହିଁ । ଆତ୍ମ ପ୍ରୟାସରେ ହିଁ ଜୟ ମିଳିବା ନିଶ୍ଚିତ । ଏଥିରେ ସାଧନା ଆବଶ୍ୟକ । ସର୍ବଦା ମନକୁ ଉପନିଷଦର ବାଣୀ ଶୁଣାଉଥିବ— "ଉତ୍ତିଷ୍ଠତ ଜାଗ୍ରତ" ।

ପ୍ରତିବେଶୀ ପ୍ରତି ଔଦାସ୍ୟ ଦେଖାଇବାର ଅପର ନାମ ଅସାମାଜିକତା । ଏ ଅସାମାଜିକତା ଆମ୍ଭମାନଙ୍କ ଦେଶରେ ସମ୍ପୂର୍ଣ୍ଣ ଅବିଦିତ ଥିଲା । ସମ୍ପ୍ରତି ବହୁ ବିଲାତି ଅନାଚାର ଓ କଦାଚାର ଯେପରି ଆମ୍ଭେମାନେ ବରଣ କରି ନେଇଅଛୁ, ସେହିପରି ଏ ଅସାମାଜିକତାରେ ମଧ୍ୟ ଅଙ୍ଗ ଢାଳି ଦେଇଅଛୁଁ । ଏକାନ୍ନବର୍ତ୍ତୀ ପରିବାର ଭାଙ୍ଗିବାର ସ୍ୱପକ୍ଷରେ ଯେଉଁ ସମସ୍ତ ଯୁକ୍ତି ପ୍ରଦର୍ଶିତ ହୁଏ, ହୁଏତ ସେ ସବୁ ଯୁକ୍ତିର କେତେଗୁଡ଼ିଏ ମାନି ଗଲେ ଅପରାଧ ହେବ ନାହିଁ । କିନ୍ତୁ ପ୍ରତିବେଶୀଙ୍କ ପ୍ରତି ଔଦାସ୍ୟ ସପକ୍ଷରେ କୌଣସି ଯୁକ୍ତି ବିଚାରସହ ହୋଇ ନ ପାରେ ।

ବଡ଼ ସହରରେ ପାର୍ଶ୍ବର ଘରେ କିଏ ରହିଲେ ତାହାର ସମ୍ବାଦ କେହି ରଖନ୍ତି ନାହିଁ । ପ୍ରତିବେଶୀଙ୍କ ଗୃହରେ ତାହାଙ୍କ ଏକମାତ୍ର ତରୁଣ ପୁତ୍ର ହୁଏ ତ ମୃତ୍ୟୁ ମୁଖରେ ପତିତ—ଗୃହରେ କ୍ରନ୍ଦନର ରୋଳ ଉଠିଅଛି—ସେହି ମୁହୂର୍ତ୍ତରେ ଆରପାଖ ଘରେ ମୁଁ ବନ୍ଧୁବାନ୍ଧବଙ୍କୁ ନେଇ ପ୍ରମତ୍ତ—ଗୀତ ବାଦ୍ୟ, ହାସ୍ୟ ପରିହାସ, ଆମୋଦ ପ୍ରମୋଦର ବନ୍ୟା ବୋହି ଯାଉଅଛି । ଏ ବ୍ୟାପାର କେବଳ ହୃଦୟ ହୀନତାର ପରିଚାୟକ ନୁହେ—ଏହାର ନିର୍ମ୍ମମତା ସାଂଘାତିକ । ମୁଁ ହୁଏତ କହିବି କେବେ କାହାଘରେ କେଉଁ ବିପଦ ଘଟିବ ମୁଁ କଅଣ ତାହା ବୁଝି ମୋ ଘରରେ ଆମୋଦ ପ୍ରମୋଦର ବ୍ୟବସ୍ଥା କରିବି ? କାହାର କେଉଁ ବିପଦ ହେଲେ, ମାତ୍ର ମୋ ଘରେ ସମସ୍ତେ ତଟସ୍ଥ ରହିବେ ଅବା କାହିଁକି ?

ଏ ଯୁକ୍ତି ମୂଳରେ ଟିକିଏ ସୁଦ୍ଧା ସାରବତ୍ତା ନାହିଁ । ଆଜି ସାହି ପଡ଼ିଶାର ବିପଦ, ମୋ ଘରେ ଏଭଳି ବିପଦ ତ ହୋଇପାରେ । ମୋ ପିଲାର ପ୍ରବଳ ଜ୍ୱର—ଡାକ୍ତର କହିଅଛନ୍ତି ଟିକିଏ ଶାନ୍ତିରେ ବିଶ୍ରାମର ପ୍ରୟୋଜନ । ସେହି ସମୟରେ ପଡ଼ିଶା ଘରର କୌଣସି ପୂଜାର ଉତ୍ସବ ସକାଶେ ଯେବେ ଢୋଲ କିମ୍ବା ଘଣ୍ଟାର ନିନାଦ ହେଉଥାଏ ତେବେ ମୋ ପିଲାର ନିଦ୍ରାର ବ୍ୟତିକ୍ରମ ସକାଶେ ମୋ ମନର ଦଶା କଅଣ ହେବ ? ପର ସକାଶେ ଦରଦ ନ ଆସିଲେ ମଧ୍ୟ ନିଜର ସ୍ୱାର୍ଥ ଭଳି ମୌଖିକ ଦରଦ ଦେଖାଇବାର ପ୍ରୟୋଜନ ଅବଶ୍ୟମ୍ଭାବୀ ହୋଇଉଠେ ।

ଗୋଟିଏ ଘଟଣାର କଥା ଏଠାରେ ଉଲ୍ଲେଖ ଆବଶ୍ୟକ । କଟକ ସହରର ସେଖ ବଜାରରେ ଲେଖକର ପିତୃଦେବ ବସାକରି ରହିଥିଲେ । ଆମ୍ଭମାନଙ୍କ ବସାର ଅନତି ଦୂରରେ ବିଲୋଚନ ବାବୁ ନାମରେ ଅନ୍ୟ ଜଣେ ଭଦ୍ରବ୍ୟକ୍ତି ବାସ କରୁଥିଲେ । ତାହାଙ୍କର

ଜାମାତାଙ୍କ ବସା କଟକର କାଜି ବଜାରରେ ଥିଲା । ସେଠାରେ ସ୍ୱଳ୍ପ ଭଡ଼ାରେ ଗୋଟିଏ ବସା ମିଳିବାରୁ ତ୍ରିଲୋଚନବାବୁ ସେଖ-ବଜାରସ୍ଥ ବସା ଛାଡ଼ି କାଜିବଜାରସ୍ଥ ବସାକୁ ଯିବାକୁ ପ୍ରସ୍ତୁତ ହେଲେ । ଯେଉଁଦିନ ସମସ୍ତେ ଯିବାକୁ ପ୍ରସ୍ତୁତ ହୋଇ ଗାଡ଼ିରେ ଦ୍ରବ୍ୟାଦି ଉଠାଇ ଦେଉଅଛନ୍ତି, ଏ ସମୟରେ ସମ୍ବାଦ ପାଇଲେ ନିକଟସ୍ଥ ବାଡ଼ି ବଗିଚାର ପୋଖରୀରେ ଫୁଟିଥିବା ରକ୍ତ କଇଁଫୁଲ ତୋଳିବାକୁ ତାହାଙ୍କର ଅଠବର୍ଷ ବୟସ୍କ ପୁଅ ପୋଖରୀକୁ ଯାଇଥିଲା, ହଠାତ୍ ଗୋଡ଼ ଖସିଯିବାରୁ ଅଧିକ ପାଣିରେ ଉବୁଡ଼ି ବୁଡ଼ିଯାଉଥିଲା । ଠିକ୍ ସେହି ସମୟରେ ସୁବୁଧିଆ କେଉଟ ଗାଧୋଇବାକୁ ଆସି ଏହି ବ୍ୟାପାର ଦେଖି ହଠାତ୍ ପାଣିକୁ ଡେଇଁ ପଡ଼ିଲା ଓ ପିଲାକୁ ମୃତ୍ୟୁମୁଖରୁ ରକ୍ଷାକଲା । ତ୍ରିଲୋଚନ ବାବୁ ଏହି ବ୍ୟାପାରରେ ବସା ବଦଳାଇବାର ସଂକଳ୍ପ ତତ୍‌କ୍ଷଣାତ୍ ତ୍ୟାଗକଲେ ଏବଂ ଗାଡ଼ିରୁ ସମସ୍ତ ଦ୍ରବ୍ୟ ପୁଣି ଘରକୁ ନେଇ ଆସିଲେ । କହିଲେ, ଏଭଳି ପଡ଼ିଶାକୁ ଛାଡ଼ି ନୂତନ ସ୍ଥାନକୁ ଯିବେ କାହିଁକି ?

ପଡ଼ିଶାର ସୁଖରେ ସୁଖୀ ଏବଂ ଦୁଃଖରେ ଦୁଃଖୀ ହେଲେ ପରମ ଲାଭ । ବିପଦ ତ ସମସ୍ତଙ୍କର କପାଳରେ ରହିଅଛି । ଦରିଦ୍ର ଓ ପ୍ରାଣର ଯୋଗ ଥିଲେ ପଡ଼ିଶାମାନେ ବିପଦରେ ଆସି ପାର୍ଶ୍ୱରେ ଦଣ୍ଡାୟମାନ ହେବେ । ପ୍ରତ୍ୟେକ ଦାୟରେ ଅପରର ମୁଖାପେକ୍ଷୀ ହେବାକୁ ହେବ । ସାହାଯ୍ୟ ସମିତି ଖୋଲିବାରେ ଆମ୍ଭେମାନେ ବାହାରକୁ ଯେଉଁ ତତ୍‌ପରତା ଦେଖାଉଅଛୁଁ, ପ୍ରତିବେଶୀ ପ୍ରତି ଆମ୍ଭେମାନେ ଉଦାସୀନ କାହିଁକି ? ଏ ଅସାମାଜିକତା ହାତରୁ ନିଜକୁ ଉଦ୍ଧାର କରି ନ ପାରିଲେ ଆମ୍ଭେମାନେ ନିଃସଙ୍ଗତା ଏବଂ ବହୁ ଅସୁବିଧା ଭୋଗ କରିବୁଁ—ଜୀବନ ତହିଁରେ ଭାର ହୋଇ ଉଠିବ ।

---

# ମାତୃତ୍ୱର କାର୍ଯ୍ୟକ୍ଷେତ୍ର

ଜଗତରେ ପୁରୁଷମାନଙ୍କ ମଧ୍ୟରେ ଯେଉଁମାନେ ମହତ୍ତମ ବୋଲି ବିଦିତ, ସେମାନେ ପାରିବାରିକ କୌଣସି ନା କୌଣସି ସମ୍ବନ୍ଧରେ ଆଦର୍ଶ ସ୍ଥାନୀୟ ଥିଲେ ବୋଲି ମନୁଷ୍ୟ ସମାଜରେ ଶ୍ରେଷ୍ଠ ସ୍ଥାନ ଲାଭ କରିନାହାନ୍ତି । ସେମାନଙ୍କର ସାଧନା ଓ ସିଦ୍ଧିର କ୍ଷେତ୍ର ପରିବାରର ଗଣ୍ଡିକୁ ଅତିକ୍ରମ କରିଥିଲା ।

ପୁରୁଷ ଜାତୀୟ ମନୁଷ୍ୟଗଣ ପ୍ରଧାନତଃ ପିତା, ପୁତ୍ର, ପତି କିମ୍ବା ଭ୍ରାତାରୂପେ ବିବୃତ ହୁଅନ୍ତି ନାହିଁ, ମନୁଷ୍ୟ ବୋଲିହିଁ ବିବୃତ ହୁଅନ୍ତି । ସେମାନେ ପାରିବାରିକ ଜୀବନର କର୍ତ୍ତବ୍ୟ କରି ସୁଦ୍ଧା ଜନ ସମାଜର ଦାବିରୁ ନିଷ୍କୃତି ପାଆନ୍ତି ନାହିଁ । ଲୋକେ ସେମାନଙ୍କ ନିକଟରୁ ଅହୁରି କିଛି ଲୋଡ଼ନ୍ତି । ସେମାନେ ବିଶ୍ୱ-ନିୟନ୍ତା ଓ ବିଶ୍ୱ ନିୟମକୁ କେଉଁ ପରିମାଣରେ ଜାଣି ପରଂବ୍ରହ୍ମଙ୍କ ସହିତ କି ସମ୍ବନ୍ଧ ସ୍ଥାପନ କରି ପାରିଅଛନ୍ତି, ନିଜ ମାନଙ୍କର ଓ ଅନ୍ୟାନ୍ୟମାନଙ୍କର ଆତ୍ମାର କି ସଦ୍‌ଗତି କରିଅଛନ୍ତି, କେଉଁ ଉତ୍କର୍ଷ ସାଧନ କରିଅଛନ୍ତି—ଦେଶକୁ, ଜାତିକୁ ଓ ଜଗତକୁ ସେମାନେ କି ଦୁଃଖ-ଦୁର୍ଗତିରୁ ଉଦ୍ଧାର କରିଅଛନ୍ତି, କାବ୍ୟ ଶିଳ୍ପ ପ୍ରଭୃତି ରଚନା କରି ସେମାନେ ଲୋକଙ୍କୁ କି ଆନନ୍ଦ, ଅଶ୍ରୁ ପ୍ରେରଣା ଓ ଶିକ୍ଷା ଦେଇଅଛନ୍ତି—ବୈଜ୍ଞାନିକ ଓ ଯାନ୍ତ୍ରିକ ଆବିଷ୍କ୍ରିୟା ଦ୍ୱାରା କେଉଁ ରହସ୍ୟ ଉଦ୍ଭେଦ, କି ତତ୍ତ୍ୱ ନିରୂପଣ, କି ସନ୍ଦେହର ମୀମାଂସା କରି ଅଛନ୍ତି ଲୋକେ ତାହା ଜାଣିବାକୁ ଇଚ୍ଛୁକ ।

ଅମ୍ଭେମାନେ ଅମ୍ଭମାନଙ୍କ ଶିକ୍ଷା ଓ ଜ୍ଞାନ ଏବଂ ସଭ୍ୟତା ସକାଶେ କେବଳ ମାତ୍ର ପିତା, ମାତା ଓ ଆତ୍ମୀୟ ସ୍ୱଜନଙ୍କ ନିକଟରେ ହିଁ ଋଣୀ ନୋହୁଁ; ସମୁଦାୟ ସମାଜ, ସମୁଦାୟ ଜଗତ୍ ସାକ୍ଷାତ୍

ଅଥବା ପରୋକ୍ଷ ଭାବରେ ଆମ୍ଭମାନଙ୍କର ଶିକ୍ଷକ ଓ ଆନନ୍ଦ ଦାତା । ସୁତରାଂ ଆମ୍ଭେମାନେ ସମସ୍ତେହିଁ ନର-ନାରୀ-ନିର୍ବିଶେଷରେ ସମାଜର, ଦେଶର, ଜାତିର ଓ ଜଗତର ଋଣ ପରିଶୋଧ କରିବାକୁ ବାଧ୍ୟ । ଈଶ୍ୱରଦତ୍ତ ସମୁଦାୟ ଶକ୍ତିର ସୁବ୍ୟବହାର କଲେ ଆମ୍ଭେମାନେ କିୟତ୍ ପରିମାଣରେ ଏହି ଋଣ ପରିଶୋଧ କରିପାରୁଁ ।

ପାରିବାରିକ ଜୀବନର ବାହାରକୁ ନାରୀର ମଧ୍ୟ କାର୍ଯ୍ୟ ରହିଅଛି । ତଥାପି ନାରୀମାନେ ପ୍ରଧାନତଃ ସେମାନଙ୍କର ପାରିବାରିକ ଜୀବନ ଦ୍ୱାରାହିଁ ବିଶୃଙ୍ଖଳ ହୋଇଥାନ୍ତି । କିନ୍ତୁ ସେମାନେ, ଯେଉଁ-ମାନଙ୍କ ସହିତ ପାରିବାରିକ ସମ୍ବନ୍ଧରେ ଆବଦ୍ଧ, ସେମାନଙ୍କ ପ୍ରତି କର୍ତ୍ତବ୍ୟ ସମ୍ପନ୍ନ କରି ସୁଦ୍ଧା ମାନବ ସମାଜ ପ୍ରତି କିଛି କରିପାରନ୍ତି । ଅନେକ ନାରୀ ତାହା କରିଅଛନ୍ତି । ପୁରୁଷମାନଙ୍କ ଭଳି ସେମାନେ ମଧ୍ୟ ସେମାନଙ୍କର ଶିକ୍ଷା, ଜ୍ଞାନ, ସଭ୍ୟତା ଓ ଆନନ୍ଦ ସକାଶେ ପିତା, ମାତା, ଆତ୍ମୀୟସ୍ୱଜନ ବ୍ୟତୀତ ଜଗତ୍ ନିକଟରେ ମଧ୍ୟ ସାକ୍ଷାତ୍ ଓ ପରୋକ୍ଷ ଭାବରେ ଋଣୀ ଏବଂ ଏହି ଋଣ ପରିଶୋଧ କରିବା ସେମାନଙ୍କର ମଧ୍ୟ କର୍ତ୍ତବ୍ୟ । ଏତଦ୍‌ବ୍ୟତୀତ ଭଗବାନ ନାରୀମାନଙ୍କୁ ମଧ୍ୟ ଆତ୍ମା ଦେଇଅଛନ୍ତି ଏବଂ ନାନା ଗୁଣ ଓ ଶକ୍ତି ଦେଇଅଛନ୍ତି । ସୁତରାଂ ଆତ୍ମାର ଉତ୍କର୍ଷ ସାଧନ ଏବଂ ଏହି ସମସ୍ତ ଗୁଣ ଓ ଶକ୍ତିର ସଦ୍‌ବ୍ୟବହାର କରିବା ସେମାନଙ୍କର କର୍ତ୍ତବ୍ୟ । ଜଗତ୍‌କୁ ଆନନ୍ଦ, ଅନୁପ୍ରେରଣା ଓ ଶିକ୍ଷା ଦେବା ସକାଶେ, ମାନବର ଦୁଃଖ-ଦୁର୍ଗତି ମୋଚନ ପାଇଁ ପୁରୁଷମାନେ ଯେଉଁ ପ୍ରକାର କାର୍ଯ୍ୟ କରନ୍ତି, ମହିଳାମାନେ ତାହା କରି ପାରନ୍ତି ଏବଂ ତାହା କରିବା ସେମାନଙ୍କର ଉଚିତ ।

ନାରୀର ମାତୃତ୍ୱ ତାହାର ଗୋଟିଏ ପ୍ରଧାନ ବୃତ୍ତି, ଧର୍ମ୍ମ ଓ ସ୍ୱରୂପ; କିନ୍ତୁ ତାହାହିଁ ତାହାର ଏକମାତ୍ର ବୃତ୍ତି, ଧର୍ମ୍ମ ଓ ସ୍ୱରୂପ

ନୁହେ । ପୁରୁଷର ଯେପରି ଆତ୍ମା, ନାରୀର ମଧ୍ୟ ସେହିପରି ଆତ୍ମା । ପୁରୁଷ ଯେପରି ମନୁଷ୍ୟ, ନାରୀ ମଧ୍ୟ ସେହିପରି ମନୁଷ୍ୟ । ଆମ୍ଭେମାନେ ନାରୀଙ୍କ ନିକଟରୁ ଅବଶ୍ୟହିଁ ଏହି ଆଶା କରିବୁଁ ଯେ, ସେ ସୁକନ୍ୟା, ସୁଭଗିନୀ, ସୁପତ୍ନୀ ଓ ସୁମାତା ହେବେ । ଅବଶ୍ୟହିଁ ଏହି ଆଶା କରିବୁଁ ଯେ ସେ ନାରୀ ପ୍ରକୃତିର ସମସ୍ତ ସଦ୍‌ଗୁଣରେ ଭୂଷିତା ହେବେ । କିନ୍ତୁ ଏହି ଆଶା ମଧ୍ୟ କରିବାକୁ ହେବ ଯେ ସେ ମହତ୍ ମନୁଷ୍ୟ ହେବେ, ଶ୍ରେଷ୍ଠ ମନୁଷ୍ୟ ହେବେ । ସେହି ସମସ୍ତ ଗୁଣ ଓ ଶକ୍ତିର ବିକାଶ ତାହାଙ୍କଠାରେ ହେବ, ଯାହା ନାରୀ ଓ ପୁରୁଷ ଉଭୟରହିଁ ସାଧାରଣ ସମ୍ପତ୍ତି—ସେହି ସମସ୍ତ କାର୍ଯ୍ୟ ସେ କରିବେ, ଯାହା ଲୋକ-ଶ୍ରେୟଃ ସାଧନାର୍ଥ ଏବଂ ଜଗତର ଋଣ ପରିଶୋଧାର୍ଥ । ସେହି ସମସ୍ତ ଅଧ୍ୟାତ୍ମିକ ସାଧନା ଓ ସିଦ୍ଧି ତାହାଙ୍କର ହେବ, ଯାହା ମହିଳା ଓ ପୁରୁଷ ଉଭୟରହିଁ ହୋଇପାରେ, କାରଣ ଉଭୟେହିଁ ଜୀବାତ୍ମା ଏବଂ ଉଭୟ ସହିତ ପରମାତ୍ମାର ଏକହିଁ ପ୍ରକାରର ସମ୍ବନ୍ଧ ।

ପରିବାର ମଧ୍ୟରେ ସୁମାତୃତ୍ୱ ଲୋଡ଼ା । ପରିବାରର ବାହାରକୁ ମଧ୍ୟ ସୁମାତୃତ୍ୱହିଁ ଲୋଡ଼ା । ଶିଶୁର କଲ୍ୟାଣ ସକାଶେ ଯାହା କିଛି ପ୍ରୟୋଜନ ତାହାର ବ୍ୟବସ୍ଥା କରିବାର ନାମ ସୁମାତୃତ୍ୱ । ଆମ୍ଭେମାନେ ଯେବେ ନିଜର ଘରବାଡ଼ି ପରିଷ୍କାର ପରିଚ୍ଛନ୍ନ ରଖୁଁ, କିନ୍ତୁ ସାହି, ଗ୍ରାମ, ନଗର, ଦେଶ, ପ୍ରଦେଶ ଅସ୍ୱାସ୍ଥ୍ୟକର କିମ୍ବା ମହାମାରୀ ଗ୍ରସ୍ତ ହୁଏ, ତାହାହେଲେ ରୋଗର ବୀଜ ଆମ୍ଭମାନଙ୍କ ଘର ମଧ୍ୟକୁ ମଧ୍ୟ ଆସିପାରେ । ସୁମାତୃତ୍ୱର କାର୍ଯ୍ୟକ୍ଷେତ୍ର ଗୃହସ୍ଥାଳୀର ବାହାରକୁ ବିସ୍ତୃତ ନ ହେଲେ ଗୃହସ୍ଥାଳୀ ମଧ୍ୟରେ ତାହା ବ୍ୟର୍ଥ ହେବାର ସମ୍ଭାବନା ରହିଅଛି । ଏହା ଯେ କେବଳ ଶାରୀରିକ ସ୍ୱାସ୍ଥ୍ୟ

ସମ୍ବନ୍ଧରେ ହିଁ ସତ୍ୟ ତାହା ନୁହେ । ହୃଦୟ ଓ ମନ ପକ୍ଷରେ ମଧ୍ୟ ଏହା ସତ୍ୟ ।

ଶିଶୁର ସମସ୍ତ ମାନସିକ ପରିବେଷ୍ଟନ ତାହାର ଜ୍ଞାନ ଓ ସୁଗୁଣ ଲାଭର ଅନୁକୂଳ ହେବାହିଁ ଆବଶ୍ୟକ । ଏ ଆଡ଼କୁ ଦୃଷ୍ଟି ରଖିବା ଏବଂ ତାହାର ବ୍ୟବସ୍ଥା କରିବା ସୁମାତୃତ୍ୱର କାର୍ଯ୍ୟ ।

ସମସ୍ତେ ସୁଖୀ ନ ହେଲେ କେହି ସମ୍ପୂର୍ଣ୍ଣ ସୁଖୀ ହୋଇ ପାରିବେ ନାହିଁ । ସମସ୍ତେ ଜ୍ଞାନୀ ନ ହେଲେ, କେହି ମୂର୍ଖତା ଓ କୁସଂସ୍କାର ହାତରୁ ପୂର୍ଣ୍ଣ ମୁକ୍ତି ପାଇ ନ ପାରେ । ସମସ୍ତେ ନୀରୋଗ ନ ଥିଲେ କେହି ସଂକ୍ରାମକ ବ୍ୟାଧିର ଆକ୍ରମଣ ସମ୍ବନ୍ଧରେ ନିରୁଦ୍‌ବେଗ ହୋଇ ପାରିବେ ନାହିଁ । ସମସ୍ତେ ଯଥେଷ୍ଟ ଭୋଜନରେ ପୁଷ୍ଟ ନ ହେଲେ ଅତି ଧନୀ ମଧ୍ୟ ଦାରିଦ୍ର୍ୟଜନିତ ସଂକ୍ରାମକ ରୋଗର କବଳରେ ପଡ଼ି ପାରନ୍ତି; ସମସ୍ତେ ନୀତିମାନ୍, ସଚ୍ଚରିତ୍ର ଏବଂ ଚିନ୍ତା, ଭାବ, କଳ୍ପନା, କଥା, କାର୍ଯ୍ୟ ଓ ଭଙ୍ଗିରେ ଶୁଚି ନ ହେଲେ ସାଧୁ ବ୍ୟକ୍ତି-ମାନଙ୍କର ଶୁଚିତ୍ୱ ମଧ୍ୟ ମ୍ଳାନ ହୋଇଯାଏ । ଏହି ସମସ୍ତ କଥା ପ୍ରାପ୍ତ-ବୟସ୍କମାନଙ୍କ ଅପେକ୍ଷା ଶିଶୁମାନଙ୍କ ଜୀବନରେ ଅଧିକ ପରିମାଣରେ ସତ୍ୟ । ଏହି ହେତୁରୁ ସନ୍ତାନର ଜନନୀମାନେ କେବଳ ନିଜର ଶିଶୁମାନଙ୍କର ଦେହ, ମନ ଓ ଆତ୍ମାର କଲ୍ୟାଣ ସକାଶେ ବ୍ୟସ୍ତ ରହିଲେ ସେ ଉଦ୍ଦେଶ୍ୟ ସିଦ୍ଧ ହେବ ନାହିଁ । ସେମାନଙ୍କୁ ନିଜର ଗୃହସ୍ଥାଳୀରେ ମାତା ହେବାକୁ ହେବ । ସାହିର, ସମାଜର, ଜାତିର, ଦେଶର ସୁମାତୃତ୍ୱ କାର୍ଯ୍ୟ ସେମାନଙ୍କ ନିଜ ମଧ୍ୟରେ ବିଭକ୍ତ କରି ନେବାକୁ ହେବ ।

ଏହି ବ୍ୟାପକ, ବ୍ୟାପକତର ଓ ବ୍ୟାପକତମ ମାତୃତ୍ୱ ନାନା ବିଷୟିକ ଜ୍ଞାନ, ଶିକ୍ଷା ଏବଂ ସାଧନା ସାପେକ୍ଷ ।

ମାତୃତ୍ୱର ବ୍ୟାପକ କ୍ଷେତ୍ରରେ କାର୍ଯ୍ୟ କରିବାକୁ ହେଲେ ମାତୃଜାତୀୟମାନଙ୍କୁ ଦଳବଦ୍ଧ ହେବାକୁ ହୋଇଥାଏ । ପୃଥିବୀର ନାନା ଦେଶର ମହିଳା ସଭ୍ୟ ଯେନ ଅନେକ ମହିଳା ସମିତି ଅଛି ।

ଜନନୀମାନେ ସ୍ୱ ସ୍ୱ ଶିଶୁମାନଙ୍କର ଶରୀର, ମନ ଓ ଆତ୍ମାର ପୁଷ୍ଟି ଓ ସ୍ୱାସ୍ଥ୍ୟ, ପବିତ୍ରତା ଏବଂ ଆନନ୍ଦ ବିଧାନ ଯିବାକାରଣେ ଯାହା ଯାହା ଲୋଡ଼ନ୍ତି, ହାତ ପାଖରେ ଅଛିର ଯେତେଗୁଡ଼ିଏ ସମ୍ଭବ ଶିଶୁ ସକାଶେ ତାହାର ଆୟୋଜନ କରିବାକୁ ଚେଷ୍ଟାକଲେ ମାତୃତ୍ୱର ଆଲୋକ ଜୀବନପଥ ଆଲୋକିତ କରିବ । ଏହି ଆଲୋକରେ ଗୃହେ ଗୃହେ ମାତୃତ୍ୱ ଶକ୍ତି ବଢ଼ିବ । ଏଥିରେ ନିଜର ତଥା ଅନ୍ୟ ଶିଶୁମାନଙ୍କର ମଙ୍ଗଳ ହେବ ।

ମାତୃତ୍ୱ କେବଳ ଯେ ଶିଶୁମାନଙ୍କ ସକାଶେ ତାହା ନୁହେଁ । ପ୍ରାପ୍ତ ବୟସ୍କମାନଙ୍କ ପକ୍ଷରେ ମଧ୍ୟ ମାତୃତ୍ୱ ଲୋଡ଼ା । ଯେଉଁଠାରେ ଦୁଃଖ, ଦାରିଦ୍ର୍ୟ, ରୋଗ, ତାପ ଓ ମଳିନତା ସେଠାରେ ମାଙ୍କର ମଙ୍ଗଳ ହସ୍ତ ଅଶେଷ କାର୍ଯ୍ୟ କରିବ ।

ନିଜକୁ ବିସ୍ମୃତ ହୋଇ ପ୍ରୀତି-ଦୟା-ସେବା ଦେଇ ଅତି କ୍ଷୁଦ୍ର, ଅତି ନଗଣ୍ୟ, ଅତି ଉପେକ୍ଷିତକୁ ହିଁ ରକ୍ଷା କରିବା ମାତୃ ହୃଦୟର କାର୍ଯ୍ୟ । ଏହି ମାତୃ ହୃଦୟର କାର୍ଯ୍ୟ ଗୃହ ଓ ବାହାରେ ରହିଅଛି । ମାତୃଜାତୀୟାମାନେ ଯେଉଁମାନଙ୍କୁ ଜନ୍ମ ଦେଇଅଛନ୍ତି କେବଳ ଯେ ସେମାନଙ୍କର ହିଁ ମାତୃତ୍ୱ କରି ପାରନ୍ତି ତାହାନୁହେଁ, ଅପରର ମଧ୍ୟ କରି ପାରନ୍ତି । ପୁଣି ଯେଉଁମାନେ ଦୈହିକ ଅର୍ଥରେ ମାତା ହୋଇ ନାହାନ୍ତି, ସେମାନେ ମଧ୍ୟ ବହୁ ଶିଶୁ ଓ ପ୍ରାପ୍ତବୟସ୍କ ଲୋକମାନଙ୍କର ମାନସିକ, ନୈତିକ ଓ ଆଧ୍ୟାତ୍ମିକ ନବଜୀବନର କାରଣ ହୋଇ ପ୍ରକୃତ ମାତୃପଦବାଚ୍ୟ ହୋଇ ପାରିବେ ।

# ଜାତୀୟ ଧନ

ଇଂଲଣ୍ଡ ଏବଂ ଅନ୍ୟର ଅନେକ କ୍ଷୁଦ୍ର କ୍ଷୁଦ୍ର ଦେଶ ପ୍ରଦେଶ ଆୟତନରେ ଅତ୍ୟନ୍ତ କ୍ଷୁଦ୍ର ହେଲେହେଁ କି ପ୍ରକାରରେ ଏଭଳି ଶ୍ରୀବୃଦ୍ଧିଶାଳୀ ହୁଏ—ଏହି ବିଷୟ ଚିନ୍ତା କରି ଦେଖିଲେ ଆମ୍ଭେମାନେ ଦେଖୁଁ, ଏହି ସମସ୍ତ ଦେଶର ଖାଦ୍ୟ ସାମଗ୍ରୀରେ ଲୋକସଂଖ୍ୟା ତୁଳନାରେ ଏକ ସପ୍ତାହର ଖାଦ୍ୟ ମଧ୍ୟ ନାଅଣ୍ଟ । ତେବେ କି ପ୍ରକାରେ ଏମାନେ ବଞ୍ଚି ରହନ୍ତି ଏବଂ ଏତେ ଧନଶାଳୀ ହୁଅନ୍ତି ?

ଏ ପ୍ରଶ୍ନର ଉତ୍ତର ବିସ୍ମୟକର ନୁହେ । ବାଣିଜ୍ୟ ବ୍ୟବସାୟ, କଳକାରଖାନା ଦ୍ୱାରା ଉତ୍ପନ୍ନ ଦ୍ରବ୍ୟର ରପ୍ତାନି ଏବଂ ତାହା ବିନିମୟରେ ଅନ୍ୟ ଦେଶର ଧନ ସମ୍ପତ୍ତି ଏବଂ ଶସ୍ୟାଦି ସଂଗ୍ରହ କରି ଏମାନେ ସୁଖ ସ୍ୱଚ୍ଛନ୍ଦରେ ଜୀବନାତିପାତ କରନ୍ତି ।

ଭାରତ ବର୍ଷ ଏତେ ବଡ଼ ହୋଇ ଅନାଭାବରେ ଏତେ କାତର କାହିଁକି ? ଏ ଦେଶର ଲୋକେ ପରିଶ୍ରମ କାତର, ମୂଳଧନର ବ୍ୟବହାର ଜାଣନ୍ତି ନାହିଁ, ଦାୟିତ୍ୱ ଗ୍ରହଣ କରିବାକୁ ପଶ୍ଚାତ୍ପଦ, ଅର୍ଥର ପ୍ରକୃତ ସଦ୍‌ବ୍ୟବହାର ନ କରି ଜମା ରଖି ଦିଅନ୍ତି, ଏହି ଗୁଡ଼ିକହିଁ ମୁଖ୍ୟ କାରଣ । ଏହି ସମସ୍ତ କାରଣ ସକାଶେ ଜାତୀୟ ଶିଳ୍ପୋନ୍ନତି ହୁଏ ନାହିଁ, ଦେଶର ଜମିଗୁଡ଼ିକ ଅନାବାଦୀ ରୂପେ ପଡ଼ି ରହିଥାଏ, ସୁତରାଂ ଅନ୍ନ ଚିନ୍ତାହିଁ ଏହାର ଅବଶ୍ୟମ୍ଭାବୀ ଫଳସ୍ୱରୂପ । ଆମ୍ଭମାନଙ୍କର ଜାତୀୟ ଧନ ନାହିଁ । ଯେଉଁମାନଙ୍କର ଜାତୀୟ ଧନ ଅଧିକ ସେମାନଙ୍କର ଶିଳ୍ପ, କୃଷି, ବାଣିଜ୍ୟ ପ୍ରଭୃତି ସମସ୍ତ କାର୍ଯ୍ୟରହିଁ ଉନ୍ନତି ହୋଇଥାଏ ।

ଜାତୀୟଧନ କାହାକୁ କହନ୍ତି ? ଦେଶର ସମ୍ପତ୍ତି—ଯେଉଁ ସମ୍ପତ୍ତି ପରିଶ୍ରମ ଦ୍ୱାରା ଦେଶର ମୂଳଧନ ଦ୍ୱାରା ସୃଷ୍ଟି ହୁଏ, ତାହାକୁ ଜାତୀୟ ଧନ କହନ୍ତି । ଟଙ୍କା ଯେ ଏକମାତ୍ର ଧନ ତାହା ନୁହେ, ପରିଶ୍ରମ, ଦେଶର ସ୍ୱଭାବଜାତ ଦ୍ରବ୍ୟାଦି, କଳକାରଖାନା ପ୍ରଭୃତି ଜାତୀୟଧନରୂପେ ପରିଗଣିତ ।

ଦେଶର ସମ୍ପତ୍ତି ବୃଦ୍ଧିର ଅନ୍ୟାନ୍ୟ ବିବିଧ ଉପାୟ ରହିଥିଲେ ହେଁ ତିନୋଟି ଉପାୟ ହିଁ ମୁଖ୍ୟ । ସ୍ୱଭାବଜାତ ଦ୍ରବ୍ୟ, ପରିଶ୍ରମ ଏବଂ ମୂଳଧନ । ସ୍ୱଭାବଜାତ ଦ୍ରବ୍ୟ କଅଣ ? ଦେଶର କ୍ଷେତ୍ର ସମୂହରେ ସମୁତ୍ପନ୍ନ ଶସ୍ୟାଦି, ଦେଶରେ ସମସ୍ତ ପ୍ରକାର ବାଣିଜ୍ୟ ପଦାର୍ଥ ପ୍ରଭୃତି ଦେଶର ମାଟିରେ ଜନ୍ମିଥାଏ. ସୁତରାଂ ଦେଶର ସାମଗ୍ରୀ । ପରିଶ୍ରମ ମଧ୍ୟ ଜାତୀୟ ଧନର ଅନ୍ତର୍ଭୁକ୍ତ । କାରଣ ପରିଶ୍ରମ ବ୍ୟତୀତ ଦେଶର ଜମି ଉର୍ବର ହୁଏ ନାହିଁ । ଖଣିଜ ପଦାର୍ଥ ଉତ୍ତୋଳିତ ହୋଇ ବ୍ୟବହାରୋପଯୋଗୀ ହୋଇ ନ ଥାଏ । ମୂଳଧନ ମଧ୍ୟ ଜାତୀୟ ସମ୍ପତ୍ତି, କାରଣ ଏହି ମୂଳଧନରେ କୃଷି ଓ ବାଣିଜ୍ୟରୁ ଉତ୍ପନ୍ନ ଦ୍ରବ୍ୟର ବିକ୍ରୟ ସୁବିଧା ହୋଇଥାଏ । ଶ୍ରମଜୀବୀମାନେ ଖାଇ ବଞ୍ଚନ୍ତି । ବିଜ୍ଞାନ ଓ ଶିଳ୍ପ ଚର୍ଚ୍ଚାର ସହାୟତା ହୁଏ ।

ଏହି ତିନୋଟି ମୁଖ୍ୟ ଉପାୟହିଁ ଜାତୀୟ ଉନ୍ନତିର ପ୍ରଧାନ ଦ୍ରବ୍ୟ । କିନ୍ତୁ ଏଥି ମଧ୍ୟରେ ମୂଳଧନ ସଂଗ୍ରହରହିଁ ପ୍ରଥମ ଆବଶ୍ୟକ । ମୂଳଧନ ନ ଥିଲେ ସବୁ ବିଫଳ ହେବ ।

ଇଉରୋପ ଓ ଆମେରିକା ପ୍ରଭୃତି ଏହି ଅର୍ଥନୀତିରେ ବିଶାରଦ । ଏମାନେ ଯେତେବେଳେ ଦେଖନ୍ତି ଯେ ଜଣକର ଧନ ଦ୍ୱାରା କେବେହେଁ ବୃହତ୍ କାର୍ଯ୍ୟ ଅନୁଷ୍ଠିତ ହୋଇ ପାରିବ ନାହିଁ—ଯେବେ କ୍ଷତି ହୁଏ ତାହାହେଲେ ଜଣକର ସର୍ବନାଶ ହେବ,

ସେତେବେଳେ ଏମାନେ ଯୌଥ କାରବାରର ସୃଷ୍ଟି କରନ୍ତି । ଦଶଲକ୍ଷ ଟଙ୍କାର ଆବଶ୍ୟକ ସ୍ଥଳରେ ଏମାନେ ଏକ ହଜାର ଅଂଶୀଦାର ନିଅନ୍ତି । ପ୍ରତ୍ୟେକଙ୍କ ନିକଟରୁ ଏକଶତ ଟଙ୍କାର ଅଂଶ ନେଇ ଦଶଲକ୍ଷ ଟଙ୍କା ସଂଗ୍ରହ କରି କାର୍ଯ୍ୟାରମ୍ଭ କରନ୍ତି । କାର୍ଯ୍ୟର ବ୍ୟୟାଦି ବାଦ ଦେଇ ଲଭ୍ୟାଂଶ ତୁଲ୍ୟରୂପେ ବଣ୍ଟନ କରି ନିଅନ୍ତି । ଏହି ସଂଗୃହୀତ ଦଶଲକ୍ଷ ଟଙ୍କାରେ ଏମାନେ ଖଣିଜ ପଦାର୍ଥ ଉତ୍ତୋଳନ କରନ୍ତି ଏବଂ କୃଷି ବାଣିଜ୍ୟର ଉନ୍ନତି କରନ୍ତି । ଅନାୟାସରେ ଅନ୍ୟ ଦେଶର ଅର୍ଥ ଓ ଖାଦ୍ୟ ସଂଗ୍ରହ କରି ନିଜ ଦେଶର ଉନ୍ନତି କରିବାକୁ କ୍ଷମ ହୁଅନ୍ତି ।

ଏ ଦେଶରେ ଖଣିଜ ପଦାର୍ଥର ଅଭାବ ନାହିଁ, ଖଣିର ଓ ଜମିର ଅଭାବ ନାହିଁ. ଲୋକ ସଂଖ୍ୟାର ମଧ୍ୟ ଅଭାବ ନାହିଁ; ମାତ୍ର ଏତେ ଜମି ଅନାବାଦି ରୂପେ ପଡ଼ି ରହିଅଛି କାହିଁକି ? ଏତେ ଖଣି ବିଦେଶୀୟମାନଙ୍କ ଦ୍ୱାରା ପରିଚାଳିତ ହେଉଅଛି କାହିଁକି ? କେବଳ ଜାତୀୟ ମୂଳଧନର ଅଭାବରୁ ଏବଂ ଯୌଥ କାରବାରର ମୂଲ୍ୟ-ବୋଧାଭାବରୁ । ଆମ୍ଭମାନଙ୍କ ମଧ୍ୟରେ ପରସ୍ପର ପରସ୍ପରକୁ ବିଶ୍ୱାସ ନାହିଁ, ଅମ୍ଭେମାନେ ଟଙ୍କାର ପ୍ରକୃତ ବ୍ୟବହାର ଜାଣୁନାହିଁ, ସୁତରାଂ ଦୀନତାହିଁ ଏ ସବୁର ଉପଯୁକ୍ତ ଫଳ । ବିଦେଶୀୟ ଲୋକ-ମାନଙ୍କର ଧନ ସମ୍ପତ୍ତି ଓ ସୁଖ ସ୍ୱାଚ୍ଛନ୍ଦ୍ୟ ଦେଖି ଆମ୍ଭମାନଙ୍କର ଦୁଃଖ ଏବଂ କ୍ରନ୍ଦନ ହିଁ ସମ୍ବଳ ହୋଇଅଛି । ଶତ ଶତ ଜୀବନ-ବୀମା କୋମ୍ପାନୀ ( Life Insurance Company ), ଯୌଥ କାରବାର ଗୁଡ଼ିକ ଯାହା ବିଦେଶୀୟମାନଙ୍କ ଦ୍ୱାରା ପରିଚାଳିତ ହେଉଅଛି, ଶତ ଶତ ବ୍ୟାଙ୍କ ଯାହା ସମଗ୍ର ପୃଥିବୀ ବ୍ୟାପି ଯାଇ କାର୍ଯ୍ୟ କରୁଅଛି—ଏଗୁଡ଼ିକ ସମସ୍ତ ହିଁ ସେମାନଙ୍କର ଜାତୀୟ ଧନବୃଦ୍ଧିର କାରଖାନା । ଏ ଦେଶର ଲୋକେ ଏଗୁଡ଼ିକ ଅନାଇ

ଦେଖନ୍ତି ଏବଂ ଈର୍ଷା ଓ ଦୁଃଖରେ ଅଧୀର ହୋଇ କ୍ରନ୍ଦନ କରିଥାଆନ୍ତି ।

ଆମ୍ଭମାନଙ୍କ ଦେଶରେ ଦଶ ଲକ୍ଷ ଟଙ୍କା ଅଦାୟ କରିବା ସ୍ୱପ୍ନ । ଏକ ହଜାର କିମ୍ବା ଦୁଇ ହଜାର ଟଙ୍କା ଏକ ଶତ ଅଂଶ ଦ୍ୱାରା ସଂଗୃହୀତ ହୋଇ କୌଣସି ଲାଭଜନକ କାର୍ଯ୍ୟରେ ବିନିଯୋଗ କଲେ ସୁଫଳ ଲାଭର ସମ୍ଭାବନା । ମାତ୍ର ପରସ୍ପର ପରସ୍ପର ପ୍ରତି ଆନ୍ତରିକ ବିଶ୍ୱାସ ଏବଂ ପ୍ରକୃଷ୍ଟ କାର୍ଯ୍ୟ ଦକ୍ଷତା ଏଥିରେ ପ୍ରୟୋଜନ । ଏହା ହିଁ ଜାତୀୟ ଧନ ନାମରେ ଅଭିହିତ ହେବ ।

---

## ଉପବାସ

ପୂର୍ବେ ଜ୍ୱର ହେଲେ କବିରାଜମାନେ "ଲଙ୍ଘନ" ହିଁ ବ୍ୟବସ୍ଥା କରୁଥିଲେ । "ଜ୍ୱରାଦୌ ଲଙ୍ଘନଂ ପଥ୍ୟଂ, ଜ୍ୱରାନ୍ତେ ଲଘୁଭୋଜନଂ ।" ସେ ଦିନ ବର୍ତ୍ତମାନ ଚାଲି ଯାଇଅଛି । ବର୍ତ୍ତମାନ କବିରାଜଙ୍କ ରାଜତ୍ୱ ନାହିଁ, ଡାକ୍ତରଙ୍କ ରାଜତ୍ୱ । ସେମାନେ ( Vitality ) କିମ୍ବା ଜୀବନୀ ଶକ୍ତି ସବାଶେ ଚିନ୍ତିତ । ଅନାହାରରେ ଜୀବନୀ ଶକ୍ତିର କାଳେ ହ୍ରାସ ହେବ ଏହାହିଁ ସେମାନଙ୍କର ଭୟ । କବିରାଜ ମହାଶୟଗଣ ଶାସ୍ତ୍ରର ଆଦେଶ ଉପେକ୍ଷା କରି ଦେଶ-କାଳ-ପାତ୍ରାନୁସାରେ ଡାକ୍ତର ବାବୁମାନଙ୍କ ଅନୁକରଣ କରୁଅଛନ୍ତି । କିନ୍ତୁ ବର୍ତ୍ତମାନ ସ୍ୱର ବଦଳି ଅଛି । ପାଶ୍ଚାତ୍ୟ ଚିକିତ୍ସା ବ୍ୟବସାୟୀମାନେ ଏଯୁଗରେ ଉପବାସର ଭୂୟସୀ ପ୍ରଶଂସା କରୁଅଛନ୍ତି; ସୁତରାଂ ଅବସ୍ଥା ବିଶେଷରେ ଉପବାସ ହିଁ ଯେ ସ୍ୱାସ୍ଥ୍ୟରକ୍ଷାର ପ୍ରଧାନ ଉପାୟ,— ତାହା ଏ ଦେଶର ଲୋକେ ବୁଝି ପାରୁଅଛନ୍ତି ।

ବର୍ତ୍ତମାନ ଦେଶ ଯେପରି ଦରିଦ୍ର ତହିଁରେ ଉପବାସ ଅଭ୍ୟାସ କଲେ ଅର୍ଥଚିନ୍ତାର ମଧ୍ୟ ଅନେକ ଲାଘବ ହେବ । ଏହା ଉପବାସର

କଥା ନୁହେ । ପ୍ରତିମାସରେ ଯୋଡ଼ିଏ ଏକାଦଶୀ ଏବଂ ଅମାବାସ୍ୟା ପୂର୍ଣ୍ଣିମାରେ ଯେବେ ଉପବାସ କରାଯାଏ, ତାହାହେଲେ ସମସ୍ତ ବର୍ଷରେ ପ୍ରତ୍ୟେକ ବ୍ୟକ୍ତିର ଦେଢ଼ମାସର ଅଧିକ ଚାଳ ଆହାରର ବ୍ୟୟ ବଞ୍ଚିଗଲା । ଏଥିରେ ସମସ୍ତଙ୍କର ବାର୍ଷିକ ବ୍ୟୟର ଅଷ୍ଟମାଂଶ ବଞ୍ଚିଲା ଅର୍ଥାତ୍ ଶତକରା ପ୍ରାୟ ୧୨୯ ଟଙ୍କା ବଞ୍ଚିଲା ।

ଉପବାସରେ ଦରିଦ୍ରର ଯେପରି ଉପକାର, ଧନୀର ମଧ୍ୟ ତଦ୍ରୂପ; ଧନୀଙ୍କର ଧନ କ୍ରମଶଃ ବୃଦ୍ଧି ପାଇବ । କୃପଣ ପକ୍ଷରେ ଉପବାସ ଉପଯୋଗୀ, ଦାତା ପକ୍ଷରେ ମଧ୍ୟ ସେହିପରି । ଏହାଦ୍ୱାରା ଦାତା ଦାନ କରିବାକୁ ଅଧିକ ସୁବିଧା ପାଇବେ ।

ଟଙ୍କା ବଞ୍ଚାଇବାକୁ ଉପବାସ କରି ଶରୀରକୁ ଅନର୍ଥକ କଷ୍ଟ ଦେବି ଚାହିଁକି ? ଏ ପ୍ରଶ୍ନର ଉତ୍ତର ଏହି ଯେ—ଉପବାସ ଦ୍ୱାରା ଶରୀରର କୌଣସି ଅପକାର ହୁଏ ନାହିଁ, ବରଂ ବିଶେଷ ଉପକାର ହୋଇଥାଏ । ଏକାବେଳକେ ଉପବାସ ନ କଲେ ବରଂ ଶରୀରର ଅପକାର ହୁଏ ।

ଆମ୍ଭମାନଙ୍କର ଯେ କୌଣସି ବ୍ୟାଧି, ତାହା ପ୍ରାୟଶଃ ଅଜୀର୍ଣ୍ଣ-ରସ-ସମୁଦ୍ଭୂତ । ଆମ୍ଭମାନଙ୍କର ପ୍ରାଚୀନ ଋଷିଗଣ ଏହା ଉଚ୍ଚକଣ୍ଠରେ ଆୟୁର୍ବେଦ ଶାସ୍ତ୍ରରେ ଘୋଷଣା କରି ଯାଇଅଛନ୍ତି— "ଅପକ୍ୱାନ୍ନ ରସଂ ଦୋଷବୈଷମ୍ୟଂ ରୋଗକାରଣଂ ।" ଦେହୀର ଦେହରେ ରୋଗାକ୍ରମଣର ନିଦାନତତ୍ତ୍ୱାଲୋଚନାରେ କଥିତ ହୋଇଅଛି ଯେ, ଅପକ୍ୱ ଆମରସ ଦ୍ୱାରା ଦେହରେ ଦୋଷ ବୈଷମ୍ୟ ଅର୍ଥାତ୍ ବାୟୁ, ପିତ୍ତ, କଫ ଏହି ତ୍ରିଦୋଷର ବୈଷମ୍ୟ କିମ୍ବା ଅସାମଞ୍ଜସ୍ୟ ରୋଗର କାରଣ ହୋଇଥାଏ । ପାଶ୍ଚାତ୍ୟ ଚିକିତ୍ସକ-ବର୍ଗ ମଧ୍ୟ କ୍ରମଶଃ ଏହି ସତ୍ୟର ଉପଲବ୍ଧି କରୁଅଛନ୍ତି ।

ଅମ୍ଭେମାନେ ଯେ ଯାହା ଖାଉଁ—ଆମିଷଭୋଜୀ ଅଥବା ନିରାମିଷ ଭୋଜୀହିଁ ହେଉଁ—ତାହା ଭଲ ଭାବରେ ଜୀର୍ଣ୍ଣ ନ ହେଲେ ଅଜୀର୍ଣ୍ଣରସ ସର୍ବ ଶରୀରରେ ସଞ୍ଚାରିତ ହୋଇଥାଏ; ଏହାହିଁ ଅମ୍ଭ-ମାନଙ୍କର ସର୍ବବିଧ ବ୍ୟାଧିର କାରଣ । ଆଜିକାଲି (Dyspepsia) ଅମ୍ଳ କିମ୍ବା ଅଜୀର୍ଣ୍ଣ ଏବଂ (Diabetes) ବହୁମୂତ୍ର ରୋଗର ସବୁଆଡ଼ରେ ପ୍ରକୋପ ଅତ୍ୟନ୍ତ ଅଧିକ । ଅତିରିକ୍ତ ଭୋଜନ ହିଁ ଏହାର କାରଣ । ଅଜୀର୍ଣ୍ଣ ରସ ଅମ୍ଭମାନଙ୍କ ଶରୀରର ଯେଉଁ ଯନ୍ତ୍ରରେ ଅଧିକ ପରିମାଣରେ ସଞ୍ଚାରିତ ହୁଏ, ସେହି ଯନ୍ତ୍ରହିଁ ରୋଗାକ୍ରାନ୍ତ ହୁଏ । ଅନେକ ରୋଗ-ବୀଜ ଅନ୍ୟ ଶରୀରରୁ ଅମ୍ଭମାନଙ୍କ ଶରୀରରେ ସଂକ୍ରମିତ ହୋଇଥାଏ ସତ୍ୟ, କିନ୍ତୁ ନିଜର ଶରୀର ସମ୍ପୂର୍ଣ୍ଣ ସୁସ୍ଥ ଥିଲେ ବାହ୍ୟବିଷ ଶରୀରରେ ପ୍ରବେଶ କଲେ ମଧ୍ୟ କୌଣସି କ୍ଷତି କରିପାରେ ନାହିଁ ; ଯେବେ କରେ ସେ ଅତି ସାମାନ୍ୟ ଭାବରେ, ସାଂଘାତିକ ଭାବରେ ନୁହେ ।

ଉପବାସରେ କୌଣସି ଭୟ ନାହିଁ । ପ୍ରତି ସପ୍ତାହରେ ଥରେ ଲେଖାଏଁ ରବିବାରରେ ଉପବାସ କରି ଦେଖିବା ଉଚିତ । ଦିନେ ନ ଖାଇଲେ ତ ମରିଯିବାର ଆଶଙ୍କା ନାହିଁ । ସେଦିନ ପରୀକ୍ଷା କରିବାକୁ ହେବ, ଶରୀର ପୂର୍ବାପେକ୍ଷା ଭଲଥିବ କି ନାହିଁ । ଉପବାସର ଦିନରେ ଅନ୍ତତଃ ଦୁଇଥର ସ୍ନାନ କରିବାକୁ ହେବ—ଊଷା ଓ ମଧ୍ୟାହ୍ନ କିମ୍ବା ମଧ୍ୟାହ୍ନ ଓ ଅପରାହ୍ନରେ । ମାତ୍ର ଏକା-ବେଳକେ ନିରମ୍ବୁ ଉପବାସ ନ କରି ଯେତେ ଥର ଇଚ୍ଛା—ବିଶୁଦ୍ଧ ପାଣି ପିଇବାକୁ ହେବ । ଉପବାସର ଦିନରେ ଜଳ ବ୍ୟତୀତ ଆଉ କିଛୁ ଖାଇବା ଅନୁଚିତ । ଏଥିରେ ସଙ୍ଗେ ସଙ୍ଗେ ସୁଫଳ ମିଳିବ । ଏଥିରେ ପେଟ ପରିଷ୍କାର ହେବ, ଜିହ୍ବା ମଧ୍ୟ ପରିଷ୍କାର ହେବ, ଶରୀର ଲଘୁ ହେବ, ଆଳସ୍ୟ ରହିବ ନାହିଁ, ମନରେ ସ୍ଫୂର୍ତ୍ତି ଓ

ଶାନ୍ତି ଉପୁଜାଏ । ଆୟୁର୍ବେଦ ଶାସ୍ତ୍ର ଉପବାସର ଉପକାରିତା ବର୍ଣ୍ଣନରେ କହିଅଛନ୍ତି:—

"ଅନବସ୍ଥିତ ଦୋଷାଗ୍ନେର୍ଲଙ୍ଘନଂ ଦୋଷ ପାଚନଂ
ଜ୍ୱରଘ୍ନଂ ଦୀପନଂ କାଂକ୍ଷାରୁଚି ଲଘବ ପ୍ରାଣଦଂ ।"

ଅର୍ଥାତ୍ ଅଗ୍ନିର ଅନବସ୍ଥିତତାରେ ଯେ ଅଜୀର୍ଣ୍ଣ-ରସ ରୂପ ଦୋଷ ଏବଂ ତଜ୍ଜନିତ ବାୟୁ-ପିତ୍ତ-କଫର ବୈଷମ୍ୟ ରୂପ ଦୋଷ ଜନ୍ମିଥାଏ, ଉପବାସରେ ସେହି ରସର ବିକୃତରୂପ ଦୋଷର ପରିପାକ କିମ୍ବା ପ୍ରକୃତିସ୍ଥତା ହୁଏ । ଉପବାସ ଜ୍ୱରନାଶକ, ଜଠରାଗ୍ନି ଉଦ୍ଦୀପକ, କାର୍ଯ୍ୟରେ ଆଗ୍ରହ ଓ ଉତ୍ସାହବର୍ଦ୍ଧକ । ଉପବାସ ଦ୍ୱାରା ଆହାରରେ ରୁଚି ବର୍ଦ୍ଧିତ ହୁଏ, ଆହାର୍ଯ୍ୟର ଆସ୍ୱାଦ ମଧୁରତର ବୋଧହୁଏ, ଶରୀର ଲଘୁ ହୁଏ ଏବଂ ତାହା "ପ୍ରାଣଦ" ଅର୍ଥାତ୍ ଜୀବନୀ-ଶକ୍ତି ବର୍ଦ୍ଧକ ।

ଯେବେ ଭଗବାନରେ ବିଶ୍ୱାସ ଥାଏ, ତେବେ ଉପବାସର ଦିନରେ ନିଜର ପ୍ରୀତି ଅନୁସାରେ ଯେଉଁ ଭାବରେ ହେଉ ତାହାଙ୍କର ଉପାସନା କରିବା ଉଚିତ୍ । ତୁମ୍ଭେ ଯେବେ ସୁସ୍ଥ ଥାଅ, ତାହା ହେଲେ ଅଧିକ ସୁସ୍ଥ ହେବ; ଯେବେ ରୋଗଯୁକ୍ତ ହୁଅ, ତେବେ ରୋଗମୁକ୍ତ ହେବ । ତୁମ୍ଭେ ଯେ କୌଣସି କଠିଣ ରୋଗରେ ଆକ୍ରାନ୍ତ ହୁଅ ପଛକେ, ଦେଖିବ ତାହା ଅନେକ ପରିମାଣରେ ଉପଶମ ହୋଇଅଛି । କମେ କମେ ସପ୍ତାହ ମଧ୍ୟରେ ଥରେ ଦୁଇ ଥର ଉପବାସ କଲେ ଚିକିତ୍ସକଙ୍କ ବ୍ୟୟ କମିଯିବ—ଏହା କମ୍ ଲାଭ ନୁହେଁ । ଯାହାହେଉ ଶରୀରର କିଛିମାତ୍ର ଅନିଷ୍ଟ ନାହିଁ, କିନ୍ତୁ ଅନେକ ଇଷ୍ଟ ରହିଅଛି । ଏଭଳି ସ୍ଥଳରେ ଏହି ଦାରିଦ୍ର୍ୟ-ନିପୀଡ଼ିତ ଦେଶରେ ମହୋପକାରୀ ଉପବାସ ଫଳରୁ ଅର୍ଥର ଉଦ୍‌ବୃତ୍ତ ବାଞ୍ଛନୀୟ ନୁହେ କି ?

ଉପବାସରେ କୌଣସି ଭୟ ନାହିଁ । ଅମ୍ଭମାନଙ୍କର ଯେତେ ରୋଗ ତହିଁରୁ ଅଧିକାଂଶହିଁ ଅତିରିକ୍ତ ଏବଂ କୁଖାଦ୍ୟଜନିତ; କିନ୍ତୁ ଉପବାସ ଜନିତ ନୁହେ । ବିଧବାମାନେ ନାନାପ୍ରକାର ଉପବାସ କରନ୍ତି, ସେମାନଙ୍କର ସୁସ୍ଥ ଓ ତେଜଃପୂର୍ଣ୍ଣ ଶରୀର ଦେଖି କଅଣ କିଛି ଶିକ୍ଷା ହୁଏ ନାହିଁ ? ଲେଖକ ଅନେକ ବୃଦ୍ଧ ପୁରୋହିତଙ୍କୁ ଦେଖିଅଛି, ସେମାନେ ଅନେକ ସମୟରେ ନିର୍ଜଳା ଉପବାସ କରି ସୁଦ୍ଧା କର୍ମଠ ଓ ସୁସ୍ଥ ରହିଥାଆନ୍ତି । ଉପବାସରେ ରୋଗଗ୍ରସ୍ତ ହେବା କଥା କ୍ୱଚିତ ଶୁଣା ଯାଇଥାଏ । ଦୀର୍ଘ କାଳର ଅନାହାରରେ ପ୍ରାଣୀ ମାନେ ହିଁ ମରିଯିବେ ଏଥିରେ ଅବଶ୍ୟ ସନ୍ଦେହ ନାହିଁ ; କିନ୍ତୁ ସର୍ପ, ସିଂହ, ବ୍ୟାଘ୍ର ପ୍ରଭୃତି ଅନେକ ଦିନ ଅନାହାରରେ ରହିସୁଦ୍ଧା ସୁସ୍ଥ ଓ ସବଳ ଥାଆନ୍ତି ।

ଉପବାସରେ କୌଣସି ଭୟ ନାହିଁ । କିନ୍ତୁ ଏକ ପ୍ରକାର ଭୟ ଅଛି, ସେ ଭୟ ଉପବାସ ସକାଶେ ନୁହେ, ସେ ଉପବାସର ଭୟର ଭୟ । ଉପବାସ କଲେ ମୁଁ ମରିଯିବି କିମ୍ବା କାତର, ଦୁର୍ବଳ କିମ୍ବା ପୀଡ଼ିତ ହେବି, ଏହା ଯେ ଗୋଟିଏ ସଂସ୍କାର, ତାହା ସେହି ସଂସ୍କାରଜନିତ ଭୟ । ବସ୍ତୁତଃ ଉପବାସରେ ସାଧାରଣତଃ କୌଣସି ଭୟ ନାହିଁ ।

ଦୁର୍ଭିକ୍ଷରେ ମନୁଷ୍ୟ ଉପବାସରେ ମରନ୍ତି ସତ୍ୟ; କିନ୍ତୁ 'ମରିବି' ଏହି ଭୟ ପ୍ରଥମରୁ ହୃଦୟରେ ପୋଷଣ କରୁଥିବାରୁ ଶୀଘ୍ର ମରିଯାଆନ୍ତି । ସାଧାରଣଙ୍କ ପକ୍ଷରେ ଏ ପରୀକ୍ଷା ନିଷ୍ପ୍ରୟୋଜନ । ସେମାନେ ସପ୍ତାହରେ ଦିନେ ଅଥବା ଦୁଇଦିନ ଉପବାସ କରି ଦେଖିପାରନ୍ତି କ୍ରମଶଃ ନିଜ ନିଜ ମଧ୍ୟରେ ବୁଝିପାରିବେ । ଆବଶ୍ୟକ ଅନୁସାରେ ସାମୟିକ ଉପବାସ ହିଁ ସ୍ୱାସ୍ଥ୍ୟର ମୂଳ । ସାଧାରଣତଃ ମିତାହାରୀ ଅର୍ଥାତ୍ ଟିକିଏ ଅଳ୍ପାହାରୀ ହେବାକୁ ହେବ । ଶାସ୍ତ୍ର

କହୁଅଛୁ— "ଲଘ୍ୱାଶୀ ନାବସୀଦନ୍ତି"—ଲଘୁ ଆହାରକାରୀ କେବେହେଁ ଅବସାଦଗ୍ରସ୍ତ ହୁଅନ୍ତି ନାହିଁ ।

ସାମୟିକ ଉପବାସ ଯେପରି ସ୍ୱାସ୍ଥ୍ୟର ମୂଳ, ଦୈନିକ ଅଳ୍ପାହାର ମଧ୍ୟ ତଦ୍ରୂପ । ଉପବାସର ପରଦିନ ନିତ୍ୟ ଯେପରି ଆହାର କରାଯାଏ, ତାହାଠାରୁ କମ ପରିମାଣରେ ଆହାର କରିବା ଉଚିତ ।

ଆମ୍ଭମାନଙ୍କ ଦେଶରେ ଅନେକ ଲୋକେ ଉପବାସର ଦିନରେ ଭାତ ବ୍ୟତୀତ ଅନ୍ୟ କୌଣସି ସାମଗ୍ରୀ ଅତିରିକ୍ତ ଭାବରେ ଆହାର କରିଥାଆନ୍ତି । ଏକାଦଶୀ କିମ୍ବା ଅନ୍ୟ କୌଣସି ଉପବାସର ଦିନମାନଙ୍କରେ ଅବସ୍ଥାପନ୍ନ ଲୋକେ ଅଟା କିମ୍ବା ମଇଦାରେ ପ୍ରସ୍ତୁତ ନାନାପ୍ରକାର ଦ୍ରବ୍ୟ ଆହାର କରିଥାଆନ୍ତି । ମାତ୍ର ଅଟା କିମ୍ବା ମଇଦା ଭାତ ଠାରୁ ଲଘୁ ପଥ୍ୟଟି କି ? ଏଭଳି ବିଗୁର କିମ୍ବା ବିବେଚନାର ଅପରାର୍ଥ ଅଭୋଜନର ଦିନରେ ଭୁରି-ଭୋଜନ ଏବଂ ଫଳାହାର୍ଥରେ ଏହା ଉପବାସର ଉପହାସ ମାତ୍ର । ଧର୍ମହିସାବରେ କିମ୍ବା ସ୍ୱାସ୍ଥ୍ୟ ହିସାବରେ ଏଭଳି ଉପବାସରେ ଧର୍ମ ଓ ସ୍ୱାସ୍ଥ୍ୟ ଉଭୟର ହିଁ ହାନି ନିଶ୍ଚିତ । ଉପବାସ କରିବାକୁ ହେଲେ ଶାସ୍ତ୍ରମତ କରିବା ଉଚିତ ।

ପ୍ରାଚୀନ କାଳରେ ହିନ୍ଦୁ ଗୃହରେ ଏକାଦଶୀ ଦିନ ଗୋ-ଅଶ୍ୱମାନଙ୍କର ଉପବାସ କରିବାକୁ ହେଉଥିଲା । ଗୋ-ଅଶ୍ୱ ପ୍ରଭୃତିର ମଧ୍ୟ ଶରୀର ରକ୍ଷା ସକାଶେ ଉପବାସ ଯେ ପ୍ରୟୋଜନୀୟ ଆମ୍ଭମାନଙ୍କର ତାହା ବୁଝିବା ଉଚିତ । କୁକୁର, ବିରାଡ଼ି ପ୍ରଭୃତିଙ୍କୁ ମଧ୍ୟେ ମଧ୍ୟେ ସ୍ୱତଃସିଦ୍ଧ ପ୍ରାକୃତିକ ଶିକ୍ଷାରେ ଉପବାସ କରିବାକୁ ଦେଖା ଯାଉଥାଏ । ଫଳତଃ ପଶୁମାନଙ୍କର ମଧ୍ୟ ଉପବାସ ଆବଶ୍ୟକ ।

ଅତିରିକ୍ତ ଆହାର କଲେ ଅର୍ଥାତ୍ ଆହାରରେ ଉଦର ସ୍ଫୀତି ହେଲେ ମସ୍ତିଷ୍କ ଖେଳେ ନାହିଁ । ଆହାର କମ କଲେ ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ଯେପରି ସବଳ ହୁଏ, ମସ୍ତିଷ୍କ ମଧ୍ୟ ସେହିପରି ପୁଷ୍ଟ ହୁଏ । ଏକାବେଳକେ କମ ଖାଇବା ଅନୁଚିତ୍ । ତହିଁରେ ଶରୀର କ୍ଷୀଣ ଓ ଦୁର୍ବଳ ହେବ, ଫଳତଃ ଠିକ୍ ଏ କମ ପରିମାଣରେ ପ୍ରାତ୍ୟହିକ ଆହାରର ବ୍ୟବସ୍ଥା ଥିବା ଉଚିତ । ଶାସ୍ତ୍ରରେ ତାହାହିଁ ମିତାହାର ନାମରେ କଥିତ ଓ ପରିଚିତ ।

ମୋହର ଦୁଇ କୋଶ ବାଟ ପଦବ୍ରଜରେ ଚାଲିଯିବାକୁ ହେବ, ଉପବାସରେ ଅବଶ୍ୟ ଚାଲି ପାରିବ ମାତ୍ର ଭରା ପେଟରେ ପାରିବ ନାହିଁ । ଖାଲି ପେଟରେ ବାଟ ଚାଲିଲେ ବ୍ୟାୟାମ ହୁଏ । କ୍ଷୁଧା ମଧ୍ୟ ବଢ଼ିଯାଏ । ଭ୍ରମଣାନ୍ତରେ ମିତାହାର କଲେ ତୁଷ୍ଟି, ପୁଷ୍ଟି, ସ୍ଫୂର୍ତ୍ତିବୃଦ୍ଧି ଓ ବଳବୃଦ୍ଧି ସହଜରେ ସମ୍ପନ୍ନ ହୁଏ ।

ଉପବାସ ଭୟର କାରଣ ନୁହେ ବରଂ ଅଭୟର କାରଣ । ଉପବାସ ରୋଗୀର ଆଶ୍ରୟ, ଭୋଗୀର ରକ୍ଷା-କବଚ ଏବଂ ଯୋଗୀର ସାଧନ-ସହାୟ । ଆମ୍ଭମାନଙ୍କ ଶରୀର ସକାଶେ ଯେତେଟିକି ଆବଶ୍ୟକ ତାହାର ଅତିରିକ୍ତ ଖାଇଲେ ସେଗୁଡ଼ିକ ପେଟକୁ ଯାଇ ପଚିଯାଏ ଏବଂ ସମସ୍ତ ଶରୀର ସେହି ଅଜୀର୍ଣ୍ଣ-ରସୋଦ୍ଭୂତ ବିଷାକ୍ତ ପଦାର୍ଥ ଦ୍ୱାରା ଆକ୍ରାନ୍ତ ହୁଏ । ମଳ-ମୂତ୍ର ଦ୍ୱାରା ଯେବେ ସେହି ବିଷାକ୍ତ ପଦାର୍ଥ ଗୁଡ଼ିକ ବାହାର ହୋଇ ନ ପାରେ ତାହା ହେଲେ ଆମ୍ଭେମାନେ କୌଣସି କୌଣସି କଠିଣ ବ୍ୟାଧି ଦ୍ୱାରା ଆକ୍ରାନ୍ତ ହୋଇଥାଉଁ । ସାଧାରଣତଃ ଯାହାର ଯେଉଁ ଯନ୍ତ୍ରଗୁଡ଼ିକ ଦୁର୍ବଳ ଥାଏ, ସେହି ବିଷାକ୍ତ ପଦାର୍ଥ ଦ୍ୱାରା ସେହି ଯନ୍ତ୍ରଗୁଡ଼ିକ ଅଧିକ ଅଭିଭୂତ ହୁଏ ଏବଂ ଆମ୍ଭେମାନେ ସେହି ଯନ୍ତ୍ରର ବ୍ୟାଧି ଭୋଗ କରିଥାଉଁ । ସେହି ବିଷାକ୍ତ ପଦାର୍ଥ ଯନ୍ତ୍ରଗୁଡ଼ିକୁ ନିସ୍ତେଜ କରି

ପକାଏ, ଶୋଣିତ-ପ୍ରବାହକାରୀ ଶିରା ସମୂହକୁ ଦୁଷ୍ଟ ରସରେ ରୁଦ୍ଧ କରି ପକାଏ । ସୁତରାଂ ଦୂଷିତ ରକ୍ତହିଁ ସଞ୍ଚାଳିତ ହୁଏ, ସମସ୍ତ ଶରୀର ବିଷରେ ଜର୍ଜରିତ ହୋଇ କଠିଣ ପୀଡ଼ା ଉପସ୍ଥିତ ହୁଏ । ମାତ୍ର ଏହା ଦିନେ ଦୁଇଦିନର ଅନିୟମରେ ହୋଇ ନ ଥାଏ । ବିଧାତା ଅମ୍ଭମାନଙ୍କୁ ଏଭଳି ଗଠିତ କରିଅଛନ୍ତି ଯେ, ସାମାନ୍ୟ ସାମାନ୍ୟ ଅନିୟମ କଲେ ଯନ୍ତ୍ରଗୁଡ଼ିକ ନିଜେ ନିଜେ ସ୍ୱବଳରୁ ତାହାର ପ୍ରତୀକାର କରି ନିଅନ୍ତି, କିନ୍ତୁ ସେମାନେ ଯେତେବେଳେ ପାରନ୍ତି ନାହିଁ ସେତେବେଳେ ଅମ୍ଭମାନଙ୍କର ବ୍ୟାଧି ଆକ୍ରମଣ ନିଶ୍ଚିତ । ଅମ୍ଭମାନଙ୍କର ଆତ୍ମଦୋଷରେହିଁ ସ୍ୱେଚ୍ଛା-ଗୃହୀତ ଦଣ୍ଡ ଏବଂ ଅସାବଧାନତାର ଶାସ୍ତିର ଅପର ନାମ ରୋଗ । ଶାସ୍ତ୍ର କହୁଅଛୁ :—

"ରୋଗ-ଶୋକ-ପରିତାପ-ବନ୍ଧନ-ବ୍ୟସନାନିଚ,
ଆତ୍ମାପରାଧ ବୃକ୍ଷସ୍ୟ ଫଳାନ୍ୟେତାନି ଦେହିନାଂ ।"

ରୋଗ, ଶୋକ, ପରିତାପ, ବନ୍ଧନ ଓ ବ୍ୟସନ—ଅମ୍ଭମାନଙ୍କର ନିଜ-ଦୋଷରୂପ ବୃକ୍ଷର ଫଳ । ଉପବାସ ଏହି ରୋଗରୂପ ବିଷଫଳ ବୃକ୍ଷର ଅତ୍ୟାହାର-ରୂପ ଆତ୍ମଦୋଷ-ବୀଜର ଧ୍ୱଂସ-ସାଧକ; ସୁତରାଂ ରୋଗାକ୍ରମଣରେ ଆତ୍ମରକ୍ଷାର ଏକ ପ୍ରଧାନ ଉପାୟହିଁ ଏହି ଉପବାସ ।

ଉପବାସ ଆରମ୍ଭ କଲେ ଯେତେବେଳେ କ୍ଷୁଧାର ଉଦ୍ରେକ ହୁଏ, ସେତେବେଳେ ନ ଖାଇଲେ ଅମ୍ଭମାନଙ୍କ ପାକସ୍ଥଳୀର ପୃଥକ-କୃତ ରସ ( Secretions ) ବନ୍ଦ ହୋଇଯାଏ । ଏହାକୁ ସହଜ କଥାରେ ଅମ୍ଭେମାନେ "ପିତ୍ତ-ପଡ଼ିବା" କହୁଥାଉଁ । କ୍ଷୁଧାରେ ଏହି secretions ବେଶି ହୁଏ । ଏହା ଉତ୍ତାରୁ ନ ଖାଇଲେ ସେମାନେ ଯେତେବେଳେ ଦେଖନ୍ତି ଯେ ବାହାର କୌଣସି ଲାଭ ନାହିଁ, ସେମାନଙ୍କର ହଜମ କରିବାର କିଛି ନାହିଁ,

ସେତେବେଳେ ସେମାନେ ନୀରବ ରହିଯାଆନ୍ତି । ସେତେବେଳେ ଅମ୍ଭମାନଙ୍କର ହଜମ କରିବାର ସବୁ ଯନ୍ତ୍ର ଗୁଡ଼ିକ ବିଶ୍ରାମ ଲାଭ କରେ । ସେତେବେଳେ ଅଭ୍ୟନ୍ତରୀଣ ଧୌତ ଆରମ୍ଭ ହୁଏ । ଦେହ-ଯନ୍ତ୍ରର ତନ୍ତ୍ରଧାରିଣୀ ପ୍ରକୃତିର ଗୀତ ଏହି ବୋଲି ଲେଖକ ଜଣେ ବଡ଼ ଚିକିତ୍ସକଙ୍କ ନିକଟରୁ ଶୁଣିଅଛି । ଏହି ହେତୁରୁ ଉପବାସ ଶରୀର ଶୋଧକ, ବିକୃତ ଯନ୍ତ୍ର ଶାସକ, ରୋଗ ବୀଜ ନାଶକ ଏବଂ ଦୁଷ୍ଟରସର ସଂସ୍କାରକ ।

ଡାକ୍ତରଙ୍କ ଏନିମାଯନ୍ତ୍ରର ( **Enema** ) ବ୍ୟବହାର ବ୍ୟତୀତ ଯଥେଷ୍ଟ ପରିମାଣରେ ପାଣି ପିଇବା ଦ୍ୱାରା ଏହି ଅଭ୍ୟନ୍ତରୀଣ ଧୌତ କାର୍ଯ୍ୟର ବିଶେଷ ସହାୟତା ହୋଇଥାଏ । ଯେତେବେଳେ ପେଟ ଖାଲି ହୋଇଯିବ, ସେତେବେଳେ ଦେଖାଯିବ ଜିହ୍ୱା ପରିଷ୍କାର ହୋଇ ଯାଇଅଛି, ଶରୀର ଲଘୁ ଓ ମନ ସୁସ୍ଥ ହୋଇଅଛି ଏବଂ କାର୍ଯ୍ୟରେ ପ୍ରବୃତ୍ତି ହୋଇଅଛି । କିନ୍ତୁ ଉପବାସ ଉତ୍ତାରୁ କ୍ଷୁଧା-ହେଲେ ମଧ୍ୟ ଅଧିକ ଆହାର ଅନୁଚିତ । ବରଂ ଅଳ୍ପପେଟ ଆହାର ଭଲ, କିନ୍ତୁ ପେଟ ପୂର୍ଣ୍ଣ କରି ଅର୍ଥାତ୍ ଭୂରି ଭୋଜନ ଉଚିତ୍ ନୁହେ । ବଙ୍ଗଳାରେ ଗୋଟିଏ ପ୍ରବାଦ ଅଛି "ଉନ ଭାତେ ଦୁନୋ ବଲ, ଭରାଭାତେ ରସାତଲ" ଏବଂ ଓଡ଼ିଆରେ ପ୍ରବାଦ ଅଛି "ଅନ୍ନେ ତକ୍ର, ଧନେ ଲୁଣ, ପେଟ ପୂରିବ ତିନି କୋଣ । ମୁଣ୍ଡରେ କପଡ଼ା, ଗୋଡ଼ରେ ତେଲ, ବଇଦ ସଙ୍ଗେ କରିବ ଗେଲ ।" ଏହି ସବୁ ପ୍ରବାଦର ପ୍ରତିବର୍ଣ୍ଣହିଁ ସତ୍ୟ । ଉପବାସର ଉପକାରିତା ଏ ଦେଶରେ ଚିର ସୁପ୍ରସିଦ୍ଧ ବୋଲି ଶାସ୍ତ୍ରରୁ ଆରମ୍ଭ ହୋଇ ସାମାନ୍ୟ ଗ୍ରାମ୍ୟ ପ୍ରବାଦ ବାକ୍ୟ ପର୍ଯ୍ୟନ୍ତ ତାହାର ସାକ୍ଷ୍ୟ ଦେଉଅଛି । ଉପବାସରେ ଅବହେଳା କିମ୍ବା ଅପାରଗତା ଏବଂ ଔଦରିକତା, ତଥା ଦାରିଦ୍ର୍ୟ ଦୋଷରେ ଅପୁଷ୍ଟିକର ଏବଂ ମିଶାଣି କୁପଥ୍ୟ ପୁଞ୍ଜରେ

ସେହି ଔଦରିକତାର ପରିତର୍ପଣହିଁ ଆମ୍ଭମାନଙ୍କର ବ୍ୟାଧିସଙ୍କୁଳତା ଏବଂ ଅଳ୍ପାୟୁତାର ପ୍ରଧାନ ନିଦାନ । ପାକସ୍ଥଳୀରେ ଯେଉଁ ପରିମାଣ ଆହାର ରହିବ ତାହାର ଅର୍ଦ୍ଧେକ ଖାଇବାହିଁ ଚିକିତ୍ସା ଶାସ୍ତ୍ରର ବ୍ୟବସ୍ଥା । ଚିକିତ୍ସା ଶାସ୍ତ୍ର କହୁଅଛି :—

"ଭୋଜ୍ୟେନ ପୂରୟେଦର୍ଦ୍ଧଂ ପାଦମେକନ୍ତୁ ବାରିଣା
ମରୁତସ୍ତାଳନାର୍ଥାୟ ଚତୁର୍ଥମବଶେଷୟେତ୍ ।"

ଅର୍ଥାତ୍ ପାକସ୍ଥଳୀର ଅର୍ଦ୍ଧଭାଗ ଭୋଜ୍ୟରେ ଏବଂ ଚତୁର୍ଥାଂଶ ଜଳରେ ପୂର୍ଣ୍ଣ କରିବ ଏବଂ ବାକି ଚତୁର୍ଥାଂଶ ବାୟୁ ଚଳାଚଳାର୍ଥ ଶୂନ୍ୟ ରଖିବ । ଶାସ୍ତ୍ର ମତରେ ଅଧପେଟ ଆହାର ଗ୍ରହଣହିଁ ସ୍ୱାସ୍ଥ୍ୟକର । ମୋଟରେ କହିବାକୁ ଗଲେ ଭାତ ଓ ପାଣି ବାରିପଣରୁ ବେଶି ହେବ ନାହିଁ, ଏଭଳି ଆହାରହିଁ ସର୍ବଦା ବାଞ୍ଛନୀୟ ।

ବଳବାନ ହେବାକୁ ଇଚ୍ଛାକଲେ, ଅର୍ଥ ସଞ୍ଚୟରେ ମନ ବଳାଇଲେ, ଧର୍ମ ଅର୍ଜ୍ଜନ କରିବାକୁ ହେଲେ, ଅଧିକ ଶାରୀରିକ ଶ୍ରମ କରିବାକୁ ଏବଂ ଅଧିକ ମାନସିକ ଶ୍ରମ କରିବାକୁ ଇଚ୍ଛା କଲେ ଉପବାସହିଁ କର୍ତ୍ତବ୍ୟ । ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ସାଧନର ପ୍ରଧାନ ଉପାୟ ଶରୀର ରକ୍ଷା—ପୁଣି ଶରୀର ରକ୍ଷାର ପ୍ରଧାନ ଉପାୟ ଉପବାସ । ଉପବାସରେହିଁ ଆମ୍ଭମାନଙ୍କର ସର୍ବାର୍ଥ-ସାଧନ । ଶାସ୍ତ୍ର କହୁଅଛି, "ସର୍ବାର୍ଥଦଂ ତପଶ୍ଚର୍ଯ୍ୟଂ ଉପବାସ କଳୌ-ଯୁଗେ ।" କଳିଯୁଗରେ ଉପବାସହିଁ ସର୍ବାର୍ଥ-ସାଧନ ତପସ୍ୟା । ଏହି କଳିଯୁଗରେ "ଅନ୍ନଗତ ପ୍ରାଣ" ବୋଲି ସାଧାରଣତଃ ଅତ୍ୟା-ହାରରେ ସେହି ପ୍ରାଣଦ ଅନ୍ନର ଅପବ୍ୟବହାର ହୁଏ; ଅତଏବ ଉପବାସ-ରୂପ ସାମୟିକ ଅନାହାର ଓ ଦୈନିକ ଅଳ୍ପାହାର-ରୂପ ମିତାହାରହିଁ ମାନବର ଅବଶ୍ୟ କର୍ତ୍ତବ୍ୟ ।

ଅମ୍ଭମାନଙ୍କ ଦେଶରେ ଉପବାସର ସାର୍ଥକତା ବୁଝାଇବାର ପ୍ରୟୋଜନ ପ୍ରାୟହିଁ ନାହିଁ । ଧର୍ମ ଅଡ଼ରୁ ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟଙ୍କର ଧର୍ମସଂକ୍ରାନ୍ତ ବାରବ୍ରତରେ ଉପବାସର ବିଧି ରହିଅଛି ।

ଅମ୍ଭମାନଙ୍କ ଦେଶରେ ଉପବାସ ଶବ୍ଦରେ ଅଙ୍କିତ କିମ୍ବା ଅନ୍ତର୍ଯ୍ୟାମ୍ବିତ ହେବାର କିଛିହିଁ ନାହିଁ । ଗାନ୍ଧୀଜୀ ନିଜ ଜୀବନରେ ଉପବାସ ଓ ପ୍ରାୟୋପବେଶନର ବହୁ ଦୃଷ୍ଟାନ୍ତ ଦେଖାଇଅଛନ୍ତି ଏବଂ କହିଅଛନ୍ତି ଯେ ଦୈହିକ ଶକ୍ତି ଉପବାସରେ କ୍ଷୁଣ୍ଣ ହୁଏ ବୋଲି ଯେଉଁମାନେ ମନେ କରନ୍ତି ସେମାନେ ଭ୍ରାନ୍ତ; ଉପବାସରେ ସଂଯମ ଦ୍ୱାରା ଯେଉଁ ଆତ୍ମିକ ଶକ୍ତି ସଞ୍ଚିତ ହୁଏ ତାହା ଦୈହିକ ବଳ ଠାରୁ ଅତ୍ୟନ୍ତ ଅଧିକ । ଭାରତବର୍ଷର ଅନେକ ସାଧୁ ସନ୍ନ୍ୟାସୀମାନେ ଏହି ଆତ୍ମିକ ଶକ୍ତିର ବିକାଶ ବହୁ କ୍ଷେତ୍ରରେ ପ୍ରଦର୍ଶନ କରିଅଛନ୍ତି । ଅମ୍ଭମାନଙ୍କ ଦେଶର ଭିକ୍ଷୁକମାନେ ଯେପରି ସଂସାରର ଅସାରତା ଓ ଦେହର ଅନିତ୍ୟତା ସମ୍ବନ୍ଧରେ ପ୍ରତି ଦ୍ୱାରରେ ଗୀତ ଗାଇ ବୁଲନ୍ତି—ଏହି ତଥ୍ୟ ଯେପରି ଏ ଦେଶର ସାଧାରଣଙ୍କର ପରିଜ୍ଞାତ, ସେପରି ସଂଯମ ଓ ଉପବାସର ମହିମା ମଧ୍ୟ ଏ ଦେଶବାସୀର ସମ୍ୟକ୍ ପରିଜ୍ଞାତ ।

କିନ୍ତୁ ପ୍ରତୀଚ୍ୟରେ ଏହାର ବିପରୀତ । ପ୍ରତୀଚ୍ୟର ସକଳ ଜାତିଙ୍କ ମଧ୍ୟରୁ କାହାରିକୁ ଓଳିଏ ଉପବାସ କରିବାକୁ ହେଲେ ଚକ୍ଷୁକୁ ଅନ୍ଧାର ଦିଶେ ।

ଉପବାସ କିମ୍ବା ଲଙ୍ଘନ ଦ୍ୱାରା ଯେ ରୋଗ ନିରାମୟ ହୁଏ ଏହା ବର୍ତ୍ତମାନ ପ୍ରତୀଚ୍ୟର କୌଣସି କୌଣସି ମନୀଷୀ ଉପଲବ୍‌ଧି କଲେଣି । ପ୍ରତୀଚ୍ୟର ସାଧାରଣ ଲୋକେ କିନ୍ତୁ ବର୍ତ୍ତମାନ ବିଶ୍ୱାସ କରନ୍ତି ଯେ ଉପବାସ କରିବା ଗୋଟିଏ ଅଲୌକିକ କାର୍ଯ୍ୟ ଏବଂ

ଉପବାସ ଦ୍ୱାରା ରୋଗ ନିରାମୟ କରିବା ମଧ୍ୟ ଚିକିତ୍ସକଙ୍କ ଅଶ୍ଚର୍ଯ୍ୟର କଥା ।

ପ୍ରତୀଚ୍ୟର ଡାକ୍ତର ସାର୍ଜିୟୁସ ମାରଗୁଲିସ "ଉପବାସର ଉପକାରିତା" ନାମକ ଯେଉଁ ଗ୍ରନ୍ଥ ପ୍ରଣୟନ କରିଅଛନ୍ତି ସେଥିରେ ବହୁ ତଥ୍ୟ ସନ୍ନିବିଷ୍ଟ । ସେ ମେଡିକେଲ କଲେଜର ଅଧ୍ୟାପକ ରୂପେ ତାହାଙ୍କର ବିଜ୍ଞାନାଗାରରେ ନାନା ଯନ୍ତ୍ର ଓ ସରଞ୍ଜାମ ସାହାଯ୍ୟରେ ପ୍ରତିପନ୍ନ କରିଅଛନ୍ତି ଯେ, ଉପବାସ ଗୋଟିଏ ଅଲୌକିକ କାର୍ଯ୍ୟ ନୁହେ, ତାହା ମନୁଷ୍ୟର ସଂଯମ ଓ ଅଭ୍ୟାସର ଅଧୀନ ଏବଂ ଉପବାସ ସାହାଯ୍ୟରେ ମନୁଷ୍ୟ ନୀରୋଗ ଓ ଦୀର୍ଘଜୀବୀ ହୋଇପାରେ । ଦୃଷ୍ଟାନ୍ତ ସ୍ୱରୂପ ସେ ଦେଖାଇଅଛନ୍ତି ଯେ ଉପବାସ ମନୁଷ୍ୟର ଶାରୀରିକ ଶକ୍ତି କ୍ଷୁଣ୍ଣ କରି ନ ଥାଏ ଏବଂ ତାହା ମନୁଷ୍ୟ ପକ୍ଷରେ ଅନିଷ୍ଟକର ନୁହେ । ସେ ପ୍ରମାଣ କରିଅଛନ୍ତି ଯେ ମନୁଷ୍ୟ ଯେବେ ଗୋଟିଏ ନିର୍ଦ୍ଦିଷ୍ଟ କାଳ ନିୟମାନୁସାରେ ଉପବାସ କରି ଓଜନରେ ୧୦ ରୁ ୧୫ ପାଉଣ୍ଡ କମିଯାଏ, ତହିଁରେ ତାହାର ଶାରୀରିକ ପ୍ରକ୍ରିୟା ସମୂହର କୌଣସି କ୍ଷତି ହୁଏ ନାହିଁ, ବରଂ ତାହା ଶରୀର ପକ୍ଷରେ ଅତ୍ୟନ୍ତ ମଙ୍ଗଳଜନକ ହୋଇଥାଏ । ସେ କହୁଅଛନ୍ତି ଯେବେ ଓଜନ ଶତକଡ଼ା ୨୫।୩୦ ଭାଗ କମିଯାଏ, ସେତେବେଳେ ଆଶଙ୍କାର କାରଣ ଉପସ୍ଥିତ ହୁଏ । ସେହି ସମୟରୁ ଶରୀରର କଳକବ୍‌ଜାର ଏବଂ ଇନ୍ଦ୍ରିୟାଦିର କାର୍ଯ୍ୟ କରିବାର କ୍ଷମତା କ୍ଷୁଣ୍ଣ ହୋଇଥାଏ । ସେ ମନୁଷ୍ୟ ବ୍ୟତୀତ ଅନ୍ୟ ପ୍ରାଣୀ ସମ୍ପର୍କରେ ପରୀକ୍ଷା ଦ୍ୱାରା ପ୍ରତିପନ୍ନ କରିଅଛନ୍ତି ଯେ କୁକ୍କୁର ଯେତେବେଳେ ଉପବାସ ଦ୍ୱାରା ଶରୀରର ଶତକଡ଼ା ୬୦ ଭାଗ ଓଜନ ହରାଇ ଦିଏ, ସେତେବେଳେ ଯେବେ ତାହାକୁ ସୁଚିକିତ୍ସାରେ ରଖାଯାଏ

ତାହାହେଲେ ଅଳ୍ପ ସମୟ ମଧ୍ୟରେ ସେ ସ୍ୱାଭାବିକ ଅବସ୍ଥା ପ୍ରାପ୍ତ ହୁଏ, ପ୍ରାୟ ମୃତ୍ୟୁମୁଖରେ ପତିତ ହୋଇ ସୁଦ୍ଧା ତାହାର କ୍ଷତି ହୁଏ ନାହିଁ । ମନୁଷ୍ୟର ଜୀବନୀଶକ୍ତି ହିସାବରେ ମନୁଷ୍ୟ ଉପବାସ ସହନଶୀଳ ହୋଇପାରେ । କେହି ବହୁଦିନ ଉପବାସ ସହନକ୍ଷମ, କେହି ଅବା ଅଳ୍ପ ଉପବାସରେ କାତର ହୋଇପଡ଼େ । କିନ୍ତୁ ଅଭ୍ୟାସ ଓ ସଂଯମର ଅନୁଶୀଳନ ଫଳରୁ ଜୀବନୀ ଶକ୍ତିର ମଧ୍ୟ ପରିବର୍ତ୍ତନ ହୋଇଥାଏ । ଏହି ହେତୁରୁ ବିଶେଷଜ୍ଞଙ୍କର ପରାମର୍ଶ ବ୍ୟତୀତ ସକଳ ମନୁଷ୍ୟର ଦୀର୍ଘ ଉପବାସ କରିବା ଅନୁଚିତ୍ ।

ତେବେ ମାରଗୁଲିସ୍ ସ୍ଥିର ସିଦ୍ଧାନ୍ତ କରିଅଛନ୍ତି ଯେ, ସାଧାରଣ ମନୁଷ୍ୟ ଉପବାସ ଦ୍ୱାରା ଶରୀରର ଓଜନ ଶତକରା ୧୫ ଠାରୁ ୨୦ ଭାଗ ହରାଇଲେ କୌଣସିରୂପେ କ୍ଷତିଗ୍ରସ୍ତ ହୋଇ ନ ଥାଏ । ଏକ ପକ୍ଷକାଳ ଉପବାସ କଲେ ମନୁଷ୍ୟର ଓଜନ ଶତକରା ୧୫ ଠାରୁ ୨୦ ଭାଗ କମିଯାଏ । ସୁତରାଂ ମନୁଷ୍ୟ ଏକ ପକ୍ଷ କାଳ ଉପବାସ କଲେ ତାହାର କୌଣସି କ୍ଷତି ହେବ ନାହିଁ ।

ଡାକ୍ତର ମାରଗୁଲିସ୍ ପରୀକ୍ଷାଦ୍ୱାରା ଆଉ ଗୋଟିଏ ତଥ୍ୟ ଆବିଷ୍କାର କରିଅଛନ୍ତି । ସେ କହନ୍ତି, ଉପବାସ ସମୟରେ ମନୁଷ୍ୟର ଦେହର ଅହାର୍ଯ୍ୟ ତାହାର ପେଶୀ ସମୂହରୁ ଉତ୍ପନ୍ନ ହୋଇଥାଏ ଏବଂ ତାହାଦ୍ୱାରା ତାହାର ଜୀବନୀ ଶକ୍ତି ଅବ୍ୟାହତ ରହିଥାଏ । କିନ୍ତୁ ଏହା ବୋଲି ବୁଭୁକ୍ଷୁ ଶରୀର ପେଶୀ ସମୂହର ଧ୍ୱଂସ ସାଧନ କିମ୍ବା ଅନିଷ୍ଟ ସାଧନ କରେ ନାହିଁ । ପେଶୀସମୂହର ସୂକ୍ଷ୍ମ ଅଂଶ ଗୁଡ଼ିକର ଯେତେବେଳେ ଅତ୍ୟଧିକ ଓଜନ ପଡ଼େ ସେତେବେଳେ ବିପଦର ଆଶଙ୍କା ହୋଇଥାଏ । ଡାକ୍ତର ମାରଗୁଲିସ୍‌ଙ୍କର ଏହି ଉପପତ୍ତି ଚିକିତ୍ସା ବିଜ୍ଞାନ ଜଗତରେ ଯୁଗାନ୍ତର ଉପସ୍ଥିତ କରିଅଛି ।

ଏତେଦିନ ଲୋକମାନଙ୍କର ବିଶ୍ୱାସ ଥିଲା ଯେ ଉପବାସ କାଳରେ ଶରୀର ନିଜର ପେଶୀସମୂହ ଉପରେ ନିର୍ଭର କରି ସେମାନଙ୍କର ଧ୍ୱଂସ ସାଧନ କରେ ଏବଂ ଏହା ଫଳରୁ ମନୁଷ୍ୟର ଶରୀର ଜୀବନୀ-ଶକ୍ତି ହରାଇଥାଏ । ସୁସ୍ଥ ସବଳ ପେଶୀର ଧ୍ୱଂସରେ ଦେହର ଧ୍ୱଂସ ହୁଏ, ଏହାହିଁ ବୈଜ୍ଞାନିକମାନଙ୍କର ଧାରଣା ରହିଥିଲା । ମାତ୍ର ଡାକ୍ତର ମାରଗୁଲିସ୍ ସେ ଧାରଣା ଭ୍ରାନ୍ତ ବୋଲି ପ୍ରମାଣ କରିଅଛନ୍ତି ।

ସେ ଅଧିକ ପ୍ରମାଣ କରିଅଛନ୍ତି ଯେ, ଉପବାସ ଦ୍ୱାରା ଶରୀରର ନଷ୍ଟ କ୍ରିୟା ଶକ୍ତିର ଉଦ୍ଧାର ସାଧନ ହୋଇଥାଏ । ପରନ୍ତୁ ଉପବାସର ସାମାନ୍ୟ ଚେଷ୍ଟା ଠାରୁ ସମ୍ପୂର୍ଣ୍ଣ ଉପବାସ ଅଧିକ ଫଳ ଦାୟକ । ସେ କହନ୍ତି ଉପବାସ ଚାରି ପ୍ରକାର:—(୧) ସମ୍ପୂର୍ଣ୍ଣ ଉପବାସ, (୨) ଆଂଶିକ ଉପବାସ, (୩) ମଝେ ମଝେ ଉପବାସ, (୪) ବହୁଦିନ ସ୍ଥାୟୀ ଉପବାସ । ଏହି ଚାରି ପ୍ରକାର ଉପବାସ ମଧ୍ୟରୁ ପ୍ରଥମୋକ୍ତ ଉପବାସହିଁ ସର୍ବଶ୍ରେଷ୍ଠ । ଆଂଶିକ ଉପବାସରେ କେତେଗୁଡ଼ିଏ ଖାଦ୍ୟ ବର୍ଜ୍ଜିତ ହୁଏ । ଏଥିରେ ହୁଏତ ଅନିଚ୍ଛାକୃତ ଅଥବା ଅଜ୍ଞତାବଶତଃ କେତେଗୁଡ଼ିଏ ଭିଟାମିନ୍ ( Vitamin ) କିମ୍ବା ଖାଦ୍ୟର ସାରାଂଶ ଛାଡ଼ି ଦିଆଯାଏ । ଏଥିରେ ଶରୀରର ପୁଷ୍ଟିକ୍ରିୟା ବ୍ୟାହତ ହୁଏ । ମଝେ ମଝେ ଉପବାସ ମନ୍ଦ ନୁହେ, ତାହା ସମ୍ପୂର୍ଣ୍ଣ ଉପବାସରୁ ନିକୃଷ୍ଟ ହେଲେହିଁ କେତେକ ପରିମାଣରେ ଫଳଦାୟକ ହୋଇଥାଏ । ଦୁର୍ଭିକ୍ଷ ସମୟରେ ବହୁକାଳ ସ୍ଥାୟୀ ଉପବାସ କରିବା ଯେତେବେଳେ ବାଧ୍ୟତାମୂଳକ ହୁଏ, ସେତେବେଳେ ସମ୍ପୂର୍ଣ୍ଣ ଏବଂ ଆଂଶିକ ଉପବାସର ଯୋଗାଯୋଗର ସମ୍ଭାବନା ହୋଇଥାଏ । ଫଳତଃ ଏଥିରେ ଅପକାରର ସମ୍ଭାବନା ଅଧିକ । ଡାକ୍ତର ସାର୍ଜ୍ଜିୟାସ୍ ମାରଗୁଲିସ୍ ନେବ୍ରାସ୍କା ମେଡିକେଲ୍ କଲେଜର ଅଧ୍ୟାପକ ।

---

# ଅଦଳ ବଦଳ

ଦୀର୍ଘ କାଳର ପରସେବା ଆମ୍ଭମାନଙ୍କୁ କେତେଦୂର ହୀନ କରିଅଛି ତାହାର ଗୋଟିଏ ଜୀବନ୍ତ ଓ ଜ୍ୱଳନ୍ତ ପ୍ରମାଣ ଏହି ଯେ, ପୃଥିବୀର ଅନ୍ୟ ସମସ୍ତ ଦେଶବାସୀମାନେ ତାହାଙ୍କ ଧର୍ମ୍ମ ଓ ସାମାଜିକ ରୀତିନୀତି ସମର୍ଥନ କରନ୍ତି; ଆମ୍ଭେମାନେ କେବଳ ଆମ୍ଭମାନଙ୍କର ଧର୍ମ୍ମ ଓ ସମାଜର ନିନ୍ଦା କରିଥାଉଁ । ରାମଙ୍କୁ ଅବତାର ବୋଲି କହିବାକୁ ଆମ୍ଭମାନଙ୍କ ଲଜ୍ଜାର ସୀମା ରହେ ନାହିଁ; କିନ୍ତୁ ଯିଶୁଖ୍ରୀଷ୍ଟଙ୍କୁ ଅବତାର ବୋଲି କହିବାକୁ ଇଉରୋପୀୟମାନେ ଗର୍ବ ଅନୁଭବ କରିଥାଆନ୍ତି । ଅବତାର ବାଦରେ ଯେବେ କୁସଂସ୍କାର ଥାଏ ତେବେ ରାମ ଓ ଖ୍ରୀଷ୍ଟ ଉଭୟ ହିଁ ସମାନ କୁସଂସ୍କାରର ଫଳ । ଆମ୍ଭମାନଙ୍କ ଦେଶର ରାମନବମୀ ସହିତ ଶିକ୍ଷିତ ସମ୍ପ୍ରଦାୟର କୌଣସି ସମ୍ପର୍କ ନାହିଁ, ମାତ୍ର ଯୀଶୁଙ୍କ ଜନ୍ମୋତ୍ସବ ଅର୍ଥାତ୍ ବଡ଼ଦିନର ଉତ୍ସବରୁ ଶିକ୍ଷିତ ଇଉରୋପୀୟ କିମ୍ବା ମାର୍କିନବାସୀ ନିଜକୁ ସ୍ୱତନ୍ତ୍ର ରଖନ୍ତି ନାହିଁ, ତାହାର ଅନୁଷ୍ଠାନର ଆନନ୍ଦ ଏବଂ ଉତ୍ସବ ଷୋହଳ ଅଣା ଉପଭୋଗ କରନ୍ତି । ସେମାନଙ୍କର ସାମାଜିକ ପ୍ରଥା କାହିଁରେ ସୁଦ୍ଧା ପରିବର୍ତ୍ତିତ ହୁଏ ନାହିଁ । ସାମାନ୍ୟ ଖ୍ରୀଷ୍ଟିୟାନ ମଧ୍ୟ ସହସ୍ରାଧିକ ବର୍ଷରୁ ଅପରିବର୍ତ୍ତନୀୟ ଭାବରେ ଚଳିଅଛି ।

ଇଂଲଣ୍ଡରେ ଶ୍ୟାଳିକା ବିବାହ ଆଇନ ସଙ୍ଗତ ବୋଲି ଗଣ୍ୟ ହେଲେହେଁ ସମାଜ ତାହା ଗ୍ରହଣ କରି ନାହିଁ । ଗୋଟିଏ ଟେବୁଲରେ ଖାଇବାକୁ ବସି ଫରାସୀମାନେ ଗ୍ଲାସରେ ଗୁ ଖାଇବେ, ଇଂରାଜ ଓ ଜର୍ମ୍ମାନମାନେ ପିଆଲାରେ ମୁହଁ ଲଗାଇ ଗୁ ପିଇବେ ଏଥିରେ ଅନ୍ୟଥା ହେବ ନାହିଁ । ଇଂରାଜ ଗ୍ରନ୍ଥରେ

ସର୍ବଦହିଁ ଇଂରାଜର ଯଶ-କାହାଣୀ ପ୍ରକଟିତ । ବିଦ୍ୟାଳୟର ପାଠ୍ୟ-ପୁସ୍ତକ ଗୁଡ଼ିକ ଇଂରାଜ ପିତାମାତାର, ଇଂରାଜ ବାଳକ ବାଳିକାର ମହିମା କୀର୍ତ୍ତିନରେ ପରିପୂର୍ଣ୍ଣ । ଲେଖକର ବାଲ୍ୟକାଳରେ ପଠିତ ରଏଲ ରିଡ଼ାରର ଗୋଟିଏ ଗଳ୍ପ କଥା ମନେ ପଡ଼ିଗଲା । ଗୋଟିଏ ଭାରତୀୟ ସ୍ତ୍ରୀ ଲୋକ ସମ୍ଭବତଃ ଅୟା, ଗୋଟିଏ ଇଂରାଜ ବାଳିକାକୁ ଘେନି ବୁଲିବାକୁ ଯାଇଥିଲା, ହଠାତ୍ ଦୂରରେ ଗୋଟିଏ ବାଘ ଦେଖିବାରୁ ଭାରତୀୟ ଅୟା ପ୍ରାଣ ଭୟରେ ବ୍ୟତିବ୍ୟସ୍ତ—ଇଂରାଜ-ବାଳିକା ଏହି ବିପଦରେ ସ୍ଥିର ଭାବରେ ଯୁକ୍ତକରରେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛି, ଏ ସମୟରେ ତାହାର ପ୍ରାର୍ଥନାର ଫଳ ଫଳିଗଲା—ଦୂରରୁ ଅଲକ୍ଷିତରେ ରହି ଜଣେ ( ଅବଶ୍ୟ ଈଶ୍ବର ପ୍ରେରିତ ) ବାଘଟାକୁ ବନ୍ଧୁକରେ ମାରି ପକାଇଲା । ଭାରତୀୟ ସ୍ତ୍ରୀ ସହିତ ଇଂରାଜ ବାଳିକାର କେଉଁ ପରିମାଣରେ ପ୍ରଭେଦ, ଏହି ଗଳ୍ପରୁ ଶିକ୍ଷା ଦିଆଗଲା ।

କୁସଂସ୍କାର ସମସ୍ତ ଦେଶରେ ରହିଅଛି । ଯେଉଁ ଜାତି ଯେତେ ପ୍ରାଚୀନ ସେହି ଜାତି ମଧ୍ୟରେ କୁସଂସ୍କାର ସେତେ ଅଧିକ ।

ଆଜିକାଲି ଅନେକ ପାଶ୍ଚାତ୍ୟ ଲେଖକ ସେମାନଙ୍କ ସଭ୍ୟତାର ଲୀଳାଭୂମି ପ୍ରାଚୀନ ଗ୍ରୀସ ଓ ରୋମର ଗୌରବ ରକ୍ଷା ସକାଶେ ଦାସତ୍ୱ ପ୍ରଥାର ଗୋଟିଏ ଧର୍ମ-ବ୍ୟାଖ୍ୟା ଦେଉଅଛନ୍ତି । ସେମାନଙ୍କର ଉକ୍ତି ଏହି ଯେ, ଯୁଦ୍ଧରେ ପରାଜିତମାନଙ୍କୁ ହତ୍ୟା ନ କରି ସେମାନଙ୍କୁ "ଦାସ" ରୂପେ ରଖାଯାଉଥିଲା; ଅତଏବ ଶାନ୍ତି ଦୟାରୁ ଦାସତ୍ୱ ପ୍ରଥାର ଉତ୍ପତ୍ତି । ଜାପାନୀମାନେ ଘରେ ଘରେ ପୂର୍ବ ପୁରୁଷର ପୂଜା ପ୍ରତିଷ୍ଠିତ କରି ଦେଶାତ୍ମବୋଧ ଲାଭ କରି ଅଛନ୍ତି । ସମଗ୍ର ଜାତିର ପ୍ରତିନିଧି ରୂପେ ରାଜା ସମଗ୍ର ଜାତିର ପୂର୍ବ ପୁରୁଷଙ୍କର ପିଣ୍ଡଦାନର (ପୂଜାର) ଅଧିକାରୀ । ଏହାହିଁ ଜାପାନର

ରାଜଭକ୍ତିର ଅଟଳ ଭିତ୍ତି । ସମସ୍ତେହିଁ ପୂର୍ବପୁରୁଷର ଓ ସ୍ୱ ଜାତିର ଗୌରବ-ଗୀତ ଗାଇ ବଡ଼ ହୋଇଅଛନ୍ତି । ଆମ୍ଭେମାନେ ପୂର୍ବପୁରୁଷ-ମାନଙ୍କ ପ୍ରତି ଅଶ୍ରଦ୍ଧା ପ୍ରକାଶ ଏବଂ ସ୍ୱଦେଶୀୟମାନଙ୍କ ନିନ୍ଦା କରି ବଡ ହେବାକୁ ଇଚ୍ଛୁକ ।

ପ୍ରକାଶ୍ୟ ଭାବରେ ମଦ୍ୟପାନ ଆମ୍ଭମାନଙ୍କ ଦେଶର ଅନ୍ତ୍ୟଜ ଜାତିମାନେ ଏବଂ ଗୁଣ୍ଡାମାନେ କରି ଥାଆନ୍ତି । ଇଉରୋପୀୟ ସ୍ୱାସ୍ଥ୍ୟପାନ ଅନ୍ତର୍ଗତ ସୁରାପାନ ଏ ଦେଶର ସଭ୍ୟତା-ବହିର୍ଭୂତ ।

ପରସ୍ତ୍ରୀ ପକ୍ଷରେ ପରପୁରୁଷର ବେକ ଧରି ନୃତ୍ୟ ପ୍ରଥା ଆମ୍ଭମାନଙ୍କ ଦେଶରେ ଲଜ୍ଜାଜନକ ଓ ନୀତିବହିର୍ଭୂତ କାର୍ଯ୍ୟ । ଏ ଦେଶର କୋହ୍ଲ, କନ୍ଧ, ଭୂମିଜ, ଗଣ୍ଡ, ଭୂୟାଁ, ସାନ୍ତାଳ ପ୍ରଭୃତି ଜାତି-ମାନଙ୍କର ସ୍ତ୍ରୀମାନେ ପ୍ରକାଶ୍ୟରେ ନୃତ୍ୟ କଲେ ସୁଦ୍ଧା ସେମାନେ ପୁରୁଷଠାରୁ ସ୍ୱତନ୍ତ୍ର ହୋଇ ନାଚନ୍ତି । ପୁରୁଷର ବେକ ଧରି ସ୍ତ୍ରୀମାନେ ନାଚୁଅଛନ୍ତି ଏହା ଦେଖିଲେ ଏ ଦେଶର ଅସଭ୍ୟ ଜାତିମାନେ ସୁଦ୍ଧା ଲଜ୍ଜା ଓ ଘୃଣାରେ ଅଭିଭୂତ ହୁଅନ୍ତି । ହିନ୍ଦୁ କିମ୍ବା ମୁସଲମାନ ସମାଜର ଯେଉଁ ଶ୍ରେଣୀର ସ୍ତ୍ରୀମାନେ ନୃତ୍ୟ କରନ୍ତି, ଭଦ୍ର ଓ ଗୃହସ୍ଥ ଘରର ସ୍ତ୍ରୀମାନଙ୍କ ସହିତ ସେମାନଙ୍କର ନାମ କରିବା ଅସଙ୍ଗତ; କିନ୍ତୁ ସେମାନେ ମଧ୍ୟ କୌଣସି ପୁରୁଷର ବେକ ଧରି ନାଚିବା କିମ୍ବା ପୁରୁଷ ସହିତ ଏକତ୍ର ନାଚିବା ଅତ୍ୟନ୍ତ ଘୃଣିତ କାର୍ଯ୍ୟ ବୋଲି ମନେ କରନ୍ତି । ଅଥଚ ଏହି ପ୍ରଥା ଇଉରୋପ ଏବଂ ଆମେରିକାର ସଭ୍ୟଜାତିମାନଙ୍କର ଏକାନ୍ତ ମନୋମତ ଓ ସଭ୍ୟତାର ପରିଚାୟକ । ଅଧିକନ୍ତୁ ଆଶ୍ଚର୍ଯ୍ୟର କଥା ଏହି ଯେ, କୌଣସି ରମଣୀ ନୃତ୍ୟ ଚକ୍ରରେ ନିଜ ପତି ସହିତ ନୃତ୍ୟ କରିପାରିବ ନାହିଁ; ସମସ୍ତଙ୍କୁ ପରପୁରୁଷର ବେକ ଧରି ନାଚିବାକୁ ହେବ । ଏହାହିଁ ବିଶେଷ ବିଧି ।

ଆମ୍ଭମାନଙ୍କ ଦେଶରେ ଏକାନ୍ନବର୍ତ୍ତୀ ପ୍ରଥା ଇଉରୋପୀୟ ମତରେ ବଡ଼ ଅନିଷ୍ଟଜନକ । ଏଥିରେ ସ୍ୱାବଲମ୍ବନ ନଷ୍ଟ ହୁଏ । ଅକର୍ମ୍ମଣ୍ୟର ଦଳ ବଢ଼ିଯାଆନ୍ତି । ବିଳାସିତା ଏବଂ ସ୍ୱାର୍ଥପରତା ସହିତ ବିଶେଷ ସମ୍ବନ୍ଧ ଥିବାରୁ ଆମ୍ଭମାନଙ୍କ ଦେଶର ଶିକ୍ଷିତ ସମାଜ ଏହି ମତଟି ସହଜରେ ବଡ଼ ପସନ୍ଦ କରିଅଛନ୍ତି । ବୃଦ୍ଧ ପିତା ମାତା ଖଟି ଖାଇବେ—ଯୁବକ ପୁତ୍ର ଉପରେ ନିର୍ଭର କରିବେ କାହିଁକି ? ସେମାନଙ୍କୁ ଏଭଳି ପ୍ରଶ୍ରୟ ଦେଇ ଅଳସ କରି ରଖିବା ପୁତ୍ରର କାର୍ଯ୍ୟ ନୁହେ, ଶତ୍ରୁର କାର୍ଯ୍ୟ । ବିଧବା ଭ୍ରାତୃବଧୂ, ପିତୃହୀନ ଭ୍ରାତୃଷ୍ପୁତ୍ର, ଅକ୍ଷମ ଭ୍ରାତାଭଗିନୀ—ଏମାନଙ୍କର କିଛି ମାତ୍ରହିଁ ଦାବି ନାହିଁ । ତେବେ ଦଶମାସ ଗର୍ଭରେ ଧାରଣ କରି ବାଲ୍ୟକାଳରେ ଲାଳନ ପାଳନ କରିଅଛନ୍ତି ବୋଲି ଜନନୀ ୧୦ମାସର ଗୋଦାମ ଭଡ଼ା ଏବଂ ବେତନ ହିସାବରେ କିଛି ପାଇ ପାରନ୍ତି । କିନ୍ତୁ ପିତା ପୁତ୍ର ସକାଶେ ଯାହା ବ୍ୟୟ କରିଅଛନ୍ତି ତାହାର ବିନିମୟରେ ନ୍ୟାୟତଃ ତାହାଙ୍କର କିଛିମାତ୍ର ପ୍ରାପ୍ୟ ନାହିଁ । କାହିଁକି ନା ସେ ଯେତେବେଳେ ପୁତ୍ରର ବିନା ଅନୁରୋଧରେ ତାହାକୁ ସଂସାରରେ ଆଣିଅଛନ୍ତି ସେତେବେଳେ ପୁତ୍ରର ଲାଳନ ପାଳନ କରିବାକୁ ସେ ଏକାନ୍ତ ବାଧ୍ୟ, ତାହାଙ୍କ ନିକଟରେ ପୁତ୍ରର ବାଧ୍ୟ ରହିବା ଆଦୌ ଯୁକ୍ତିଯୁକ୍ତ ନୁହେଁ । ବିଶେଷତଃ ଆତ୍ମୀୟ ସ୍ୱଜନମାନଙ୍କୁ ବସାଇଁ ଖୁଆଇ ଅକର୍ମ୍ମଣ୍ୟ କରିଦେବା କେବେହେଁ ବାନ୍ଧବର କାର୍ଯ୍ୟ ନୁହେ । ବସ୍ତୁତଃ ଏହି ଶ୍ରେଣୀର ଯୋଗ୍ୟ ବ୍ୟକ୍ତିବର୍ଗ ପ୍ରମାଣ କରିବାକୁ ଇଚ୍ଛୁକ ଯେ ସେମାନେ କର୍ତ୍ତବ୍ୟ ନିଷ୍ଠାର ଅନୁରୋଧରେ ଦୟା କରୁ ନାହାନ୍ତି । ଭାରତ-ବାସୀମାନେ ଏଭଳି କାର୍ଯ୍ୟକୁ ପାଷଣ୍ଡତା ମନେ କରିଥାଆନ୍ତି ।

ନାହିଁ, କେହିତ ନିଜ ସ୍ତ୍ରୀପ୍ରତି ଏହିଳି କର୍ତ୍ତବ୍ୟନିଷ୍ଠା ଦେଖାଇ ନ ଥାଆନ୍ତି ? ସ୍ତ୍ରୀ ଯେ ପର୍ଯ୍ୟଙ୍କରେ ବସି ଉପନ୍ୟାସ ପଢ଼ି ଏବଂ ତାସ ଖେଳି ଦିନ କଟାଉ ଥାଆନ୍ତି, ତାହାଙ୍କୁ ଅଳଙ୍କାରର ଭାରରେ ଦିନକୁ ଦିନ ସ୍ଥବିର କରିବା ବ୍ୟତୀତ ଖଟି ଖାଇବା ଉପାର୍ଜ୍ଜନ ସକାଶେ ତ କେହି ଉପଦେଶ ଦିଅନ୍ତି କି ? ପୁତ୍ରକୁ ମଧ୍ୟ କେତେ ଲୋକ ବର୍ଦ୍ଧିତ କରନ୍ତି ? କେବଳ ଭାଇ ଭଉଣୀ ଏବଂ ଆତ୍ମୀୟ ସ୍ୱଜନ ବେଳକୁ ସମସ୍ତ ଗୋଳମାଳ । ଯେଉଁ କାର୍ଯ୍ୟରେ ସ୍ୱାର୍ଥପରତା ଓ ବିଳାସିତା ବୃଦ୍ଧି ପାଏ ସେହିଳି ବ୍ରତ ଅବଲମ୍ବନ କରିବା ସହଜ; ଯାହା କରିବାକୁ ଗଲେ ତ୍ୟାଗୀ ହେବାକୁ ହେବ ତାହା କରିବାହିଁ କଠିଣ ।

ମନୁଷ୍ୟର ଟଙ୍କା ପଇସାର କଥାହିଁ କଅଣ ସର୍ବସ୍ୱ ? ହୃଦୟକୁ ବିକ୍ରୟ କରି କଅଣ ଟଙ୍କାପଇସା ସଞ୍ଚୟ କରିବାକୁ ହେବ ? ଏକାନ୍ନବର୍ତ୍ତୀ ପରିବାରରେ ଯେ ସର୍ବାପେକ୍ଷା ଉପାର୍ଜ୍ଜନକ୍ଷମ ତାହାଙ୍କର ପ୍ରାଣ ଉଚ୍ଚ ଏବଂ ମହତ୍ ହେବାର ଆବଶ୍ୟକ; ତାହାଙ୍କ ସ୍ତ୍ରୀ ପୁତ୍ର ଭଳି ଅନ୍ୟାନ୍ୟ ସମସ୍ତଙ୍କର ସ୍ତ୍ରୀ ପୁତ୍ର ଠିକ୍ ସମାନ ଭାବରେ ଗ୍ରାସାଚ୍ଛାଦନ ପାଇବେ । କ୍ଷୁଦ୍ର ହୃଦୟର ଲୋକେ ଏହା ସହି ପାରିବେ କିପରି ? ଏହା ଯେ ସଂସାରରେ ସମସ୍ତ ବ୍ରତ ଅପେକ୍ଷା କଠିଣ ବ୍ରତ । କେବଳ ଟଙ୍କା ଦେଲେ ହେଲା ନାହିଁ । ସମସ୍ତଙ୍କୁ ଖୁଆଇ ପିଆଇ ସୁଦ୍ଧା ସମସ୍ତଙ୍କର କଠିଣ କଥା ଶୁଣିବାକୁ ହେବ, ଅନେକ ଅନ୍ୟାୟ ଅଳି ମଧ୍ୟ ସହ୍ୟ କରିବାକୁ ହୋଇଥାଏ, ଅନେକ ବିବାଦ ଏବଂ ବହୁ ବିରକ୍ତି ମଧ୍ୟରେ ବାସ କରିବାକୁ ହୋଇଥାଏ ଏବଂ ମୃତ୍ୟୁକାଳରେ ଚିରଜୀବନର ସମସ୍ତ ଉପାର୍ଜ୍ଜିତ ସମ୍ପତ୍ତି ସମାନ ଭାବରେ ସମସ୍ତଙ୍କୁ ବାଣ୍ଟିଦେବାକୁ ହୋଇଥାଏ । ଏ ଯୁଗରେ ଏହିଳି କାର୍ଯ୍ୟ କରିବାର ଶକ୍ତି ଓ ମନ ତୁମ୍ଭର ଓ ମୋହର ଅଛି କି ? ବର୍ତ୍ତମାନର ସଂସର୍ଗ ଓ ଶିକ୍ଷା ଆମ୍ଭମାନଙ୍କ ମନକୁ ଏଡ଼େ ହୀନ ଓ

ନୀଚ କରି ପକାଇଅଛୁ । ଏକାର୍ଯ୍ୟ ଭଲ କି ମନ୍ଦ, ଏହା ବିବେଚନା କରିବା ପୂର୍ବରୁ ହୃଦୟକୁ ପଚାରିବା ଉଚିତ, ଅମ୍ଭେମାନେ ଏତେ ସାହସ ଓ ତ୍ୟାଗ ଦେଖାଇ ପାରିବୁଁ କି ?

ଏକାନ୍ନବର୍ତ୍ତୀ ପରିବାରର ସ୍ୱୋପାର୍ଜ୍ଜିତ ସମ୍ପତ୍ତି ପୈତୃକ ସମ୍ପତ୍ତି ଭଳି ବିଭକ୍ତ ହୋଇଥିଲା । ଏ ସାହସ, ଏ ତ୍ୟାଗ ଏ ଯୁଗରେ ନାହିଁ । ନବ୍ୟ ସଭ୍ୟମାନଙ୍କର ପିତାଙ୍କ ପରିବାର ସ୍ୱତନ୍ତ୍ର, ନିଜର ପରିବାର ସ୍ୱତନ୍ତ୍ର । ନିଜର ପରିବାର କେବଳ ନିଜର ସ୍ତ୍ରୀ ପୁତ୍ର ।

ତୁମ୍ଭର ଦ୍ୱିତଳ ପ୍ରାସାଦର ପଶ୍ଚାତେ ତୁମ୍ଭର ସାନ ଭାଇ ପତ୍ର କୁଡ଼ିଆରେ ବାସ କରୁଅଛି । ତୁମ୍ଭର ପିତା ଓ ପିତାମହ ପ୍ରଭୃତି ଏହା ସହିପାରୁ ନ ଥିଲେ । ସମାଜରେ ଲଜ୍ଜାରେ ତାଙ୍କର ମୁଣ୍ଡଟେକି ଚାଲିବାର ଉପାୟ ଏ କ୍ଷେତ୍ରରେ ନ ଥିଲା ।

ନବ୍ୟଯୁକ୍ତି ଏହି ଯେ କାହିଁକି ଏକର ଗ୍ରାସ ଅନ୍ୟ କାଢ଼ି ଖାଇବ ? ବଡ଼ ଭାଇ ଯେବେ ପର ହେଲା, ପୁତ୍ର ନିଜର ବୋଲାଇବ କାହିଁକି ? ତୁମ୍ଭର ମୃତ୍ୟୁ ଉତ୍ତାରୁ ତୁମ୍ଭର ବିପୁଳ ବିଭବ ଘେନି ତୁମ୍ଭର ପୁତ୍ରମାନେ କଅଣ କରିବେ ଠିକଭାବରେ କହି ପାରିବଟି କି ? ସଚରାଚର ଯାହା ହୋଇଥାଏ, ତାହା ହେବ । ତୁମ୍ଭର ଦୃଷ୍ଟାନ୍ତରେ ତୁମ୍ଭର ପୁତ୍ରମାନେ ଭ୍ରାତୃବିଚ୍ଛେଦ ଘଟାଇ ଦେବେ ଏବଂ ଅଚିରରେ ନାନାରୂପେ ସର୍ବସ୍ୱାନ୍ତ ହେବେ । ଏକାନ୍ନବର୍ତ୍ତୀ ପରିବାରରେ ରହିବାକୁ ଯେଉଁ ସଂଯମ ଆବଶ୍ୟକ, ସେହିଟିକି ଲୋକଙ୍କୁ ଅନେକ ସମୟରେ ସର୍ବସ୍ୱାନ୍ତ ହେବାରୁ ରକ୍ଷା କରିଥାଏ ।

ଏ ଯୁଗରେ ସମବାୟ ପ୍ରଥାର (Co-Operative System) ଏତେ ପ୍ରଶଂସା ହେଉଅଛି । ଅମ୍ଭମାନଙ୍କର ପ୍ରତ୍ୟେକ ପଲ୍ଲୀର ପ୍ରତ୍ୟେକ ଗୃହରେ ଏହି ସମବାୟ ପ୍ରଥା ରହିଥିଲା । କେବଳ ତୁମ୍ଭର ଆତ୍ମୀୟ ପରିବାର ବର୍ଗ ନୁହେ—ଦଶକର୍ମ୍ମ ମଧ୍ୟ ଦେଇ

ତୁମ୍ଭର ଉପାର୍ଜିତ ଅର୍ଥ ସକଳ ସମ୍ପ୍ରଦାୟର ଲୋକଙ୍କ ପଛରେ ଅଳ୍ପ ଦେଉଥିଲ । ସେ କାଳର ଲୋକେ ଟଙ୍କାର ଗଣ୍ଠିରି ବାନ୍ଧିବା ଅପେକ୍ଷା ଟଙ୍କା ବ୍ୟୟ କରିବାରେ ଅଧିକ ଶାନ୍ତି ଓ ସନ୍ତୋଷ ଲାଭ କରୁଥିଲେ ।

ଇଉରୋପର ପ୍ରଣାଳୀରେ ଚାଲିବାକୁ ହେଲେ ତୁମ୍ଭର ଅକ୍ଷମ ଜ୍ୟେଷ୍ଠଭ୍ରାତାଙ୍କୁ ଦରିଦ୍ର ନିବାସରେ ଆହାର କରିବାକୁ ହେବ ଏବଂ ତୁମ୍ଭେ ସେହି ଦରିଦ୍ର ନିବାସରେ କିଛି ମାସିକ ଚାନ୍ଦା ଦେଲେ ତୁମ୍ଭ ଭାଇଙ୍କ ପ୍ରଦତ୍ତ ଅର୍ଥରେ ତାହାଙ୍କ ଖାଦ୍ୟର କିଛିଅଂଶ ଜଣାଯିବ । ତୁମ୍ଭେ ମୋଟରରେ ଚଢ଼ି ଭ୍ରମଣରେ ବାହାରିଲ ବେଳେ ଦେଖିବ ତୁମ୍ଭର ଜ୍ୟେଷ୍ଠ ସହୋଦର ଦରିଦ୍ରାଶ୍ରମର ଅଳିଆ ଗୁଣ୍ଡକ ଟୋକେଇରେ ପୂରାଇ, ସେହି ଟୋକେଇ ମୁଣ୍ଡରେ ବୋହି ସଡ଼କରେ ପକାଉଅଛନ୍ତି । ହିନ୍ଦୁ କି ଏତେ ସହିପାରେ ?

ଏକାନ୍ନବର୍ତ୍ତୀ ପରିବାରରେ ଅଳସ ଲୋକେ ବସି ଖାଆନ୍ତି ଅଥବା ବସି ଖାଆନ୍ତି ବୋଲି ଅଳସ ହୁଅନ୍ତି ଏହା ଯେବେ ତୁମ୍ଭର ମନର କଥା ହୁଏ, ତୁମ୍ଭେ ସେମାନଙ୍କର ଉପାର୍ଜନର ଉପାୟ କରି ଦିଅ ନାହିଁ କାହିଁକି ? ଏଭଳି ଲୋକ କମ୍ ଅଛନ୍ତି ଯେ ଉପାର୍ଜନ କରିବାକୁ ଅନିଚ୍ଛୁକ । ଉପାୟ କରିପାରନ୍ତି ନାହିଁ ବୋଲି ଅଳସ ହୋଇଥାଆନ୍ତି । ପ୍ରକୃତ କଥା ଏହି ଯେ ତୁମ୍ଭେ ଦଶଜଣଙ୍କ ସାହାଯ୍ୟ କରିବାକୁ ଇଚ୍ଛୁକ ନୁହଁ, ସେଥିରେ ତୁମ୍ଭର ଉପଭୋଗରେ ବାଧା ଜନ୍ମିଥାଏ ।

ଇଉରୋପରେ ଗ୍ରୀସ ଏବଂ ରୁଷିଆରେ ଏପର୍ଯ୍ୟନ୍ତ ଏକାନ୍ନବର୍ତ୍ତୀ ପରିବାର ସ୍ଥାନେ ସ୍ଥାନେ ରହିଥିବାର ଶୁଣିଅଛୁ । ଆମେରିକାର ଲୋକମାନେ ଗ୍ରୀସ ଉପନିବେଶୀ ମାନଙ୍କୁ ସେଭଳି ପସନ୍ଦ କରନ୍ତି ନାହିଁ, କାରଣ ସେମାନେ ଆମେରିକାରେ ଟଙ୍କା ଉପାର୍ଜନ କରି ଗ୍ରୀସରେ ଥିବା ତାହାଙ୍କ ପିତା ମାତାଙ୍କ ନିକଟକୁ ଟଙ୍କା ପଠାନ୍ତି

ଏବଂ ସମସ୍ତ ସମୟରେ ସେମାନଙ୍କ ସହିତ ବାସ କରିଥାଆନ୍ତି । ଲେଖକର ସବିଶେଷ ପରିଚିତ ଜଣେ ଇଂଲଣ୍ଡୀୟ ଥରେ କହୁଥିଲେ, ସେ ଯେତେଥର କଲିକତାଠାରେ ତାହାଙ୍କର ମାତୃ-ଦେବୀଙ୍କ ଘରକୁ ଯାଇ ରହୁଥିଲେ, ସେଠାରେ ତାହାଙ୍କୁ ସେ କେତେ ଦିନର ବିଲ ପରିଶୋଧ କରିବାକୁ ହୋଇଥିଲା, ମାତାଙ୍କ ପୁଅର ଘରକୁ ଯାଇ ଏଭଳି ବଞ୍ଚିବାକୁ ହୋଇଥାଏ । ଆମ୍ଭମାନଙ୍କ ଦେଶର ଯେକୌଣସି ଅଶିକ୍ଷିତ ଓ ଦରିଦ୍ର ଲୋକଙ୍କୁ ଏ କଥା ବିଶ୍ୱାସ କରାଇବା କଠିଣ କାର୍ଯ୍ୟ ।

ଏକାନ୍ନବର୍ତ୍ତିତା ପକ୍ଷରେ ଓକାଲତି କରିବା ଏ ଯୁଗରେ ଅରଣ୍ୟରେ ରୋଦନ । ଆମ୍ଭମାନଙ୍କର ଆରାମ-ଲିପ୍ସା ଏବଂ ସ୍ୱାର୍ଥପରତା ପ୍ରଭାବରୁ ଏକାନ୍ନବର୍ତ୍ତୀତା ମୃତ । ଏ ଯୁଗରେ ଆଦର୍ଶ ଅନୁସାରେ ଚଳି ପାରୁନାହୁଁ ବୋଲି ଆଦର୍ଶକୁ ଅପମାନ କରିବା ଅନ୍ୟାୟ ଓ ଅସଙ୍ଗତ ।

ଇଂଲଣ୍ଡ ସଙ୍ଗରେ ଯେବେ ଆମ୍ଭମାନଙ୍କ ଧର୍ମ୍ମ ଓ ସମାଜର ଅଦଳ ବଦଳ ହୁଅନ୍ତା, ତାହାହେଲେ କଅଣ ହୁଅନ୍ତା ? ଆମ୍ଭମାନଙ୍କ ଆଚାର ଅଚରଣ ଯେବେ ତାହାଙ୍କର ଏବଂ ତାହାଙ୍କର ଆଚାର ଆଚରଣ ଯେବେ ଆମ୍ଭମାନଙ୍କର ହୁଅନ୍ତା, ତେବେ ଉଭୟ ପକ୍ଷର ମନର ଭାବ ବଦଳି ହୁଅନ୍ତା । ଇଂରାଜ ଯେତେବେଳେ ଆମ୍ଭମାନଙ୍କ ରାଜା ଥିଲେ, ସେତେବେଳେ ଆମ୍ଭମାନଙ୍କର ଆଚାର ବ୍ୟବହାର ଯାହାହେଉ ସେ ସମସ୍ତଙ୍କୁ ନିନ୍ଦା କରିବାର ଅଧିକାର ଥିଲା । ନାନା କାରଣ ପ୍ରୟୋଗ କରି ଏମାନେ କହୁଥିଲେ, ଭାରତୀୟମାନେ ବର୍ତ୍ତମାନ ସୁଦ୍ଧା ଅସଭ୍ୟ, ସୁତରାଂ ସ୍ୱାଧୀନ ଶାସନ ଲାଭର ଉପଯୁକ୍ତ ନୁହନ୍ତି ।

ଇଂରାଜ ଅନୁକରଣପ୍ରିୟ ବ୍ୟକ୍ତିବର୍ଗ କହୁଥିଲେ, "କାହିଁକି ଇଂରାଜ ଆମ୍ଭମାନଙ୍କୁ ସମ୍ମାନ କରିବେ ? ଆମ୍ଭମାନଙ୍କ ଅଗୃହ ବ୍ୟବହାର ସ୍ୱତଃମାତ ଏକାନ୍ତ ନିମ୍ନଶ୍ରେଣୀର ଲୋକଙ୍କ ଭଳି ରହିଅଛି ।"

ଭାରତ ସ୍ୱାଧୀନତା ଲାଭ କରିବା ଦିନଠାରୁ ଏ କଳାଗୋରାର ମୀମାଂସା ହୋଇଥିଲେହେଁ ଏପର୍ଯ୍ୟନ୍ତ ଆଦର୍ଶ ଅନୁସୃତ ହେଲା ନାହିଁ, ଏହାହିଁ ଦୁଃଖର କଥା ।

---

## ସଂସାର ଓ ସନ୍ନ୍ୟାସ

ଏ ଜଗତରେ ମନୁଷ୍ୟ-ଜୀବନର ଦୁଇଟି କାର୍ଯ୍ୟ—ସଂସାର ଓ ସନ୍ନ୍ୟାସ । ଏହି ହେତୁରୁ ଜଗତରେ ଦେଖୁଁ ହୁଏତ ମନୁଷ୍ୟ ସଂସାରୀ ହୋଇ ବିଷୟ ଧନ ପୁତ୍ରକଳତ୍ର ପରିବାର ଭିତରେ ବିପନ୍ନ ରହି ଦିନ କଟାଉଅଛି କିମ୍ବା ମନୁଷ୍ୟ ସନ୍ନ୍ୟାସୀ ଏବଂ ଉଦାସୀ ହୋଇ ଫଳମୂଳାହାରରେ ଜୀବନ ଧାରଣ କରି ଏହି ଦୁର୍ଗମ ସଂସାରାରଣ୍ୟରେ ବିଚରଣ କରୁଅଛି । ଏହି ହେତୁରୁ ସର୍ବଦା ଦେଖୁଁ ମନୁଷ୍ୟ କେଉଁଠାରେ ଭିକ୍ଷାପାତ୍ର ହସ୍ତରେ ଦୀନ ବେଶରେ ଅନ୍ୟର ଦ୍ୱାରରେ ଅନ୍ନର ଭିକାରୀ, କେଉଁଠାରେ ଅବା ଅନ୍ନର ସଂସ୍ଥାନ କରି ନ ପାରି ଦାରୁଣ ଘୃଣ୍ୟ ଚୌର୍ଯ୍ୟ ବୃତ୍ତିରେ ବ୍ରତୀ, କେଉଁଠାରେ ପୁଣି ଦୁର୍ବଳର ସର୍ବସ୍ୱ ଅପହରଣ କରି ପ୍ରବଳତମ ପରାକ୍ରମରେ ପରାକ୍ରାନ୍ତ । ଜଗତରେ ଏଭଳି ସଂସାର ଦୃଶ୍ୟ ଲାଗି ରହିଅଛି ।

ଏହା ଉତ୍ତାରୁ ଅନ୍ୟଆଡ଼େ ସନ୍ନ୍ୟାସ ଦୃଶ୍ୟରେ ପୁଣି ଦେଖୁଁ— ହୁଏତ କେହି ଭସ୍ମ-ବିଲେପିତ ଅଙ୍ଗ—ସର୍ବଦା ମୁଖରେ "ଜୟ ଶିବ ଶମ୍ଭୁ" କିମ୍ବା କେହି ହରି ନାମାଙ୍କିତ ନାମାବଳୀ ଦେହରେ—

ମୁହଁରେ ସର୍ବଦା "ହରି ହରି" ଉଚ୍ଚାରଣ । ହୁଏ ତ କେହି ଅରଣ୍ୟରେ କେହି ଅବା ଶ୍ମଶାନରେ । ଏଭଳି ଦୁଇଅଡ଼େ ଦୁଇ ଦୃଶ୍ୟ । ଉଭୟ ଅନ୍ତର ଉଭୟ ମାର୍ଗ ।

ବର୍ତ୍ତମାନ୍ ପ୍ରଶ୍ନ ଏତିକି କେଉଁ ମାର୍ଗରେ ଯିବୁଁ ? କେଉଁ ମାର୍ଗରେ ଅଗ୍ରସର ହେବା ଅବଶ୍ୟ କର୍ତ୍ତବ୍ୟ ? ମନେ ମନେ ସର୍ବଦାହିଁ ଭାବନା—ଏହି କୋଳାହଳମୟ ସଂସାର ଶ୍ରେଷ୍ଠ କିମ୍ବା ଶାନ୍ତିର ଆଳୟ ସ୍ୱରୂପ ସନ୍ନ୍ୟାସହିଁ ଶ୍ରେଷ୍ଠ ? ଏ ସଂସାର ନରକ କୁଣ୍ଡରେ ଘାଣ୍ଟି ହୋଇ ଉବେଇ ଟୁବେଇ ହେବା କଅଣ ଶ୍ରେୟଃ କିମ୍ବା ସେ ଶୋକ ତାପ ଶୂନ୍ୟ ପବିତ୍ର ସନ୍ନ୍ୟାସ ସୁଧାରେ ନବଜୀବନ ଲାଭ ସ୍ପୃହଣୀୟ ? ବାହ୍ୟ ଦୃଶ୍ୟରେ ଦେଖିବାକୁ, ଲୋକ ମୁଖରେ ଶୁଣିବାକୁ, ଶାସ୍ତ୍ରାଦିରେ ମଧ୍ୟ ଅଧ୍ୟୟନ କରିବାକୁ ସନ୍ନ୍ୟାସହିଁ ଅବଶ୍ୟ ଶ୍ରେଷ୍ଠଧର୍ମ—ସନ୍ନ୍ୟାସହିଁ ଅବଶ୍ୟ ସେହି ମଙ୍ଗଳମୟଙ୍କର ଶ୍ରୀଚରଣରେ ଆଶ୍ରୟ ନେବାର ଉତ୍ତମ ମାର୍ଗ—ସନ୍ନ୍ୟାସହିଁ ଅବଶ୍ୟ ଚିଦାନନ୍ଦ ଏବଂ ପ୍ରେମାନନ୍ଦରେ ମନୁଷ୍ୟଙ୍କୁ ସୁଖୀ କରାଇପାରେ ।

କିନ୍ତୁ ସଂସାର କଅଣ ଏତିକି ହେୟ ? ସଂସାର କଅଣ କେବଳ ପାପ-ତାପ-ଶୋକର ଆଳୟ ? ସଂସାର କଅଣ ନରକ ଯାତନା ଭୋଗର ସ୍ଥାନ ? ସଂସାରରେ କଅଣ କେବଳହିଁ ହଳାହଳ କିମ୍ବା ଗୁରିଆଡ଼େ ଗରଳ ? ଆମ୍ଭେମାନେ ଯେତେ ଭାବୁ ନା କାହିଁକି, ସଂସାର ଆମ୍ଭମାନଙ୍କ ଚକ୍ଷୁରେ ଯେତିକି ଭୀଷଣ ଏବଂ ଭୟଙ୍କର ହେଉନା କାହିଁକି, କିନ୍ତୁ ବାସ୍ତବିକ ସଂସାର ସେଭଳି ନୁହେ । ଆମ୍ଭେମାନେ ସଂସାରରେ ରହି ସୁଦ୍ଧା ସଂସାରର ପ୍ରକୃତ କାର୍ଯ୍ୟ କରୁ ନ ଥିବା ହେତୁରୁ—ସଂସାରର ଧର୍ମ ପ୍ରତିପାଳନରେ ଆମ୍ଭମାନଙ୍କର ସେଭଳି ସାମର୍ଥ୍ୟ ନ ଥିବାରୁ ଆମ୍ଭେମାନେ ଏହା ମନେ କରିଥାଉଁ । ନୋହିଲେ ଆମ୍ଭେମାନେ ଯେବେ ବାସ୍ତବିକହିଁ ସଂସାରୀ ହୋଇ-

ପାରନ୍ତୁ—ସଂସାର ଧର୍ମ ପ୍ରତିପାଳନ କରିବାକୁ ବାସ୍ତବିକହିଁ ଯେବେ ଅମ୍ଭମାନଙ୍କର ସାମର୍ଥ୍ୟ ଥାଆନ୍ତା, ତେବେ କଅଣ ଆଉ କୌଣସି ଭାବନା ରହନ୍ତା ? କିନ୍ତୁ ତାହା କରିବାକୁ ଅମ୍ଭମାନଙ୍କର ସାମର୍ଥ୍ୟ ଥାଇ ସୁଦ୍ଧା ନାହିଁ—ସଂସାରର ପ୍ରକୃତ ବ୍ୟବହାର ଅମ୍ଭେମାନେ ଶିଖି ନାହୁଁ । ସଂସାର କଥାଟିକି ଅମ୍ଭେମାନେ ନାମ ମାତ୍ରରେ ଜାଣୁ । କିନ୍ତୁ ତାହାର କାର୍ଯ୍ୟ କଅଣ, ଅନୁଷ୍ଠାନ କିପରି ସେ ବିଷୟରେ ଅମ୍ଭମାନଙ୍କର ଆଦୌ ଅଭିଜ୍ଞତା ନାହିଁ । ଏହି ହେତୁରୁ ଉନ୍ନତି ଦେଖାଇବାକୁ ହେଲେ—ନିଜେ ନିଜେ ଉନ୍ନତ ହେବାକୁ ଗଲେ ସର୍ବଦା ସଂସାର ଛାଡ଼ି ସନ୍ନ୍ୟାସର କଥା କହୁଥାଉଁ—ସଂସାରର କାର୍ଯ୍ୟ ତ୍ୟାଗ କରି ସନ୍ନ୍ୟାସୀ କିମ୍ବା ଉଦାସୀ ହେବାକୁ ଇଚ୍ଛା ପ୍ରକାଶ କରୁଥାଉଁ । ଭାବୁ ତାହାହିଁ ଯେପରି ଅମ୍ଭମାନଙ୍କର ଚରମ ପନ୍ଥା—ସଂସାର ନ ଛାଡ଼ିଲେ ଯେପରି ଅମ୍ଭମାନଙ୍କର ଗତ୍ୟନ୍ତର ନାହିଁ ।

ଅମ୍ଭେମାନେ ନ ବୁଝି ଏପରି ଭାବୁଥାଉଁ । କିନ୍ତୁ ପ୍ରକୃତରେ ଯେ ସନ୍ନ୍ୟାସୀ ସେ ସମସ୍ତହିଁ ବୁଝନ୍ତି । ସେ ବୁଝନ୍ତି ଯେ ସଂସାର ଓ ସନ୍ନ୍ୟାସରେ ପ୍ରଭେଦ ନାହିଁ । ସେ ଜାଣନ୍ତି ଯେ ସଂସାର ଛାଡ଼ି କେବଳ ସନ୍ନ୍ୟାସୀ ହେଲେ ମୁକ୍ତିର ଚରମ କାର୍ଯ୍ୟ ହେବ ନାହିଁ । ଏ ସମ୍ବନ୍ଧରେ କୌଣସି ଭକ୍ତ ସନ୍ନ୍ୟାସୀ ତାହାଙ୍କର ଜଣେ ନବୀନ-ଶିଷ୍ୟଙ୍କୁ ଯେଉଁ ଉପଦେଶ ଶୁଣାଇଥିଲେ ତାହାହିଁ ସ୍ଥାନାନ୍ତରରୁ ସଂଗୃହୀତ ହେଲା, ସେଥିରୁ ସବୁ ଜଣାଯିବ, ସେଥିରୁ ସଂସାର ଓ ସନ୍ନ୍ୟାସର ଗୂଢ଼ତତ୍ତ୍ୱ ଉପଲବ୍ଧି ହେବ ।

ଭକ୍ତ ସାଧୁ ସନ୍ନ୍ୟାସ ଧର୍ମ ଅବଲମ୍ବନରେ ବାଧା ଦେଇ ତାହାଙ୍କର ନବୀନ ଶିଷ୍ୟକୁ କହୁଥିଲେ, "ବତ୍ସ, ବିଚଳିତ ହୁଅ ନାହିଁ । ସନ୍ନ୍ୟାସୀ ହୋଇ ଅରଣ୍ୟରେ ଈଶ୍ୱରାରାଧନା କରିବାର ସମୟ ବର୍ତ୍ତମାନ ତୁମ୍ଭର ହୋଇ ନାହିଁ । ସଂସାର ଓ ସନ୍ନ୍ୟାସରେ କି

ପ୍ରଭେଦ ତାହା ଏ ପର୍ଯ୍ୟନ୍ତ ତୁମ୍ଭେ ବୁଝିପାର ନାହିଁ । ଏହି ହେତୁରୁ ତୁମ୍ଭର ମନ ବିଚଳିତ ଏବଂ ଚଞ୍ଚଳ ହେଉଅଛି । ଏହି ସଂସାରରେ ସଂସାରୀ ହେବା ଅପେକ୍ଷା ସନ୍ନ୍ୟାସୀ ହେବା କୌଣସି ପ୍ରକାରରେ ଶ୍ରେଷ୍ଠ ନୁହେ । 'ସନ୍ନ୍ୟାସୀ ଅପେକ୍ଷା ଯେ ସଂସାରୀ ହୋଇ ପାରନ୍ତି ସେ ଅଧିକ ଧନ୍ୟ । ସର୍ବତ୍ୟାଗୀ ହୋଇ ଈଶ୍ୱରଙ୍କ ନିକଟରେ ମନ ସମର୍ପଣ କରିବା ସମ୍ଭବପର; କିନ୍ତୁ ସର୍ବପ୍ରାଣ ହୋଇ—ବିଷମ ସଂସାର-ଚିନ୍ତାରେ ଭଗ୍ନମନା ହୋଇ ସୁଦ୍ଧା ଯେ ତାହାଙ୍କୁ ଡାକିପାରେ, ତାହାଙ୍କ ଭାବନା ଭାଳିପାରେ, ସେ କଅଣ ସର୍ବାପେକ୍ଷା ଶ୍ରେଷ୍ଠ ନୁହେ ? ତାହାର କଠୋର ସଂସାର-ଧର୍ମ୍ମ-ସାଧନ ହିଁ ସେହି ପରମ ପିତାଙ୍କର ପବିତ୍ର ଚରଣ ଆକର୍ଷଣ କରିବାକୁ ସର୍ବାପେକ୍ଷା କ୍ଷମ ନୁହେ ? ସନ୍ନ୍ୟାସୀଙ୍କର ଅନ୍ୟ ଚିନ୍ତା ନାହିଁ, ସନ୍ନ୍ୟାସୀ ସମସ୍ତ କରିପାରନ୍ତି—ତନ୍ମୟ ହୋଇ ଭଗବତ୍-ପ୍ରେମରେ ଆତ୍ମ-ବିଲୀନ ହୋଇ ପାରନ୍ତି; ସେ ଭାବ ତାହାଙ୍କ ପକ୍ଷରେ କଠୋର କିମ୍ବା କୃଚ୍ଛ୍ର ସାଧ୍ୟ ନୁହେ । କିନ୍ତୁ ତୁମ୍ଭେ ସଂସାରରେ ରହି ସୁଦ୍ଧା ପୁତ୍ରକଳତ୍ର ଭାରରେ ଭାରାକ୍ରାନ୍ତ ହୋଇ ସୁଦ୍ଧା ଯେବେ ତାହାଙ୍କୁ ଡାକି ପାରିବ, ତାହାହିଁ ପ୍ରକୃତ ଧର୍ମ୍ମ ସିନା ? ତୁମ୍ଭେ ଉଦ୍ବିଗ୍ନ ହୁଅ ନାହିଁ—ସଂସାର ଛାଡ଼ି ଚଞ୍ଚଳ ସନ୍ନ୍ୟାସୀ ହେବା ସକାଶେ ବ୍ୟସ୍ତ ହୁଅ ନାହିଁ । ସଂସାର କଅଣ ପ୍ରଥମରୁ ତାହା ବୁଝି ସଂସାରର କାର୍ଯ୍ୟ କର, ତାହା ଉତ୍ତାରୁ ସନ୍ନ୍ୟାସୀ ହୋଇ ପାରିବ ।"

ସଂସାରୀର ଧର୍ମ ଅତି କଠିଣ । ଆମ୍ଭେମାନେ ତାହା ଯଥାମତ ପାଳନ କରୁ ନାହିଁ ବୋଲି ସଂସାର ଆମ୍ଭମାନଙ୍କ ନିକଟରେ ବିଷମୟ । ମନରେ ଭାବୁ ସଂସାର ଛାଡ଼ିଦେଇ ସନ୍ନ୍ୟାସୀ ହୋଇ ପାରିଲେ ଉପାୟାନ୍ତର ରହିଅଛି । କିନ୍ତୁ ସର୍ବଦା ଏତିକି ସ୍ମରଣ ରଖିବା ଉଚିତ ଯାହାର ଯେଉଁ ଅବସ୍ଥା ଅଛି ତାହାର ସେହି

ଅବସ୍ଥାର ଉପଯୁକ୍ତ କାର୍ଯ୍ୟ କଲେ ଆଉ ଅନୁତାପ ହେବାକୁ ପଡ଼ିବ ନାହିଁ । ସଂସାରର ଗୋଟିଏ ପାଳନୀୟ ଧର୍ମ ଅତିଥି-ସତ୍କାର । କିନ୍ତୁ ଆମ୍ଭେମାନେ ଆଜିକାଲି ଏତିକି ହେୟ ହୋଇଅଛୁଁ ଯେ, ଅତିଥି-ସତ୍କାର ଦୂରକୁ ଥାଉ, ଅତିଥି ଦେଖିଲେ ଆମ୍ଭେମାନେ ସୁମିଷ୍ଟ ଭର୍ତ୍ସନାରେ ତାହାକୁ ଦୂର କରି ଦେଇଥାଉଁ । କିନ୍ତୁ ଯେଉଁମାନେ ପ୍ରକୃତ ମନୁଷ୍ୟ ଥିଲେ କିମ୍ବା ଆଜିକାଲି ଯେଉଁମାନେ ପ୍ରକୃତ ମନୁଷ୍ୟ ପଦବାଚ୍ୟ ସେମାନେ ଏକ ଅତିଥି ସତ୍କାରରୁ ହିଁ ନିଜର ସର୍ବ ଧର୍ମ ପାଳନ କରି ଯାଇଅଛନ୍ତି । ଅତିଥି ସତ୍କାରରେ ନିଜର ପ୍ରାଣ ପର୍ଯ୍ୟନ୍ତ ପଣ କରିବାକୁ ହୋଇଥାଏ । ଅତିଥି ସତ୍କାରରେ ମହାଭାରତୋକ୍ତ କର୍ଣ୍ଣରାଜାଙ୍କ ପୁତ୍ର ବୃଷକେତୁଙ୍କ ଉଦାହରଣ ଭାରତବର୍ଷର ସର୍ବଶ୍ରେଷ୍ଠ ଉଦାହରଣ । ପିତାମାତା ସ୍ୱହସ୍ତରେ ପୁତ୍ରର ମସ୍ତକ ଛେଦକରି ଅତିଥିକୁ ଆହାରାର୍ଥ ପ୍ରଦାନ କରିବା ଏହା ଶୁଣିବାକୁ ଓ ବୁଝିବାକୁ କଅଣ ଆଶ୍ଚର୍ଯ୍ୟ ଓ ବିଷମ କଥା ନୁହେ ? ସଂସାରସ୍ଥ ଗୃହୀର ଧର୍ମ ହିଁ ଏହିରୂପ ।

ଏ ସମ୍ବନ୍ଧରେ ଗୋଟିଏ ସୁନ୍ଦର ପୁରାତନ ଗଳ୍ପ ରହିଅଛି । କୌଣସି ଜଣେ ରାଜପୁତ୍ର ତାହାଙ୍କର ଜଣେ ଭୃତ୍ୟ ସହିତ ମୃଗୟା କରିବାକୁ ଯାଇଥିଲେ । ଗୋଟିଏ ମୃଗର ଅନୁସରଣରେ ସେମାନେ ଏକ ଗଭୀର ଅରଣ୍ୟ ମଧ୍ୟରେ ପ୍ରବେଶ କରି ପଥହରା ହେଲେ । ସେ ଅରଣ୍ୟରେ ଆହାର ଦୂରେ ଥାଉ, ଜଳ ସୁଦ୍ଧା ନାହିଁ । ଯାହା ସାମାନ୍ୟ ଖାଦ୍ୟ ଦ୍ରବ୍ୟ ଥିଲା ତାହା ଶେଷ ହେଲା । କ୍ଷୁଧାରେ କାତର ହୋଇ ସେମାନେ ଛଟପଟ ହୋଇ ଅରଣ୍ୟରେ ଭ୍ରମଣ କଲେ । ଏହିପରି ଦୁଇଦିନ ଅନାହାରରେ କଟିଗଲା । ଶେଷ ଦିନ ଅର୍ଥାତ୍ ତୃତୀୟ ଦିନରେ ସୁଦ୍ଧା ରାତ୍ରିପର୍ଯ୍ୟନ୍ତ ସେମାନେ ଆହାର ପାଇଲେ ନାହିଁ । ଅବଶେଷରେ ଯେତେବେଳେ ସନ୍ଧ୍ୟା ଉପସ୍ଥିତ ହେଲା

ପୂର୍ବ ଦୁଇଦିନ ଭଳି ସେମାନେ ପୁଣି ଗୋଟିଏ ବୃକ୍ଷତଳରେ ଆଶ୍ରୟ ନେଲେ । ଏହି ଦିନକୁ ସେମାନଙ୍କର ଚଳିବା ଶକ୍ତି ନାହିଁ—ପ୍ରଚଣ୍ଡ କ୍ଷୁଧାରେ ଅବସନ୍ନ । ପ୍ରଭୁ ଭୃତ୍ୟ ଉଭୟ ସେହି ଅରଣ୍ୟରେ ବସି ରୋଦନ କଲେ ଏବଂ କାତର କଣ୍ଠରେ ଭଗବାନଙ୍କୁ ଡାକିଲେ । ଯେଉଁ ସମୟରେ ସେମାନଙ୍କର ଏହି ବିପଦ ସେତେବେଳେ ପୁଣି ଦାରୁଣ ଶୀତ । ଅରଣ୍ୟ ମଧ୍ୟରେ ରାତିରେ କ୍ଷୁଧାକାତର ହୋଇ ଅସହ୍ୟ ଶୀତ ଭୋଗିବାକୁ ସେମାନେ ବାଧ୍ୟ ହେଲେ ।

ଯାହାହେଉ ସେତେବେଳେ ଭୃତ୍ୟ କେତେ ଗୁଡ଼ିଏ ଶୁଷ୍କ-କାଷ୍ଠ ଓ ଲତା ପ୍ରଭୃତି ଏକତ୍ର କରି ଅଗ୍ନି ଜାଳିଲା ଏବଂ ତାହାର ପ୍ରଭୁଙ୍କ ଶରୀର ସେକିଲା, ନିଜେ ମଧ୍ୟ ସେକି ହେଲା । କିନ୍ତୁ ରାଜପୁତ୍ର କ୍ରମେ ସଂଜ୍ଞାହୀନ ହୋଇଗଲେ । ଭୃତ୍ୟ ଥରେ ଭଗବାନଙ୍କୁ ଡାକେ ପୁଣି ରାଜପୁତ୍ରଙ୍କର ଶୁଶ୍ରୂଷା କରୁଥାଏ । ଥରେ ଥରେ ଉପରକୁ ଅନାଇ କହୁଥାଏ—"ଭଗବାନ ଆମ୍ଭମାନଙ୍କୁ ବଞ୍ଚାଅ ।"

ଏହିପରି ରାତି କାଟୁଥାଏ । ଯେଉଁ ବୃକ୍ଷ ତଳରେ ସେମାନେ ଆଶ୍ରୟ ନେଇଥିଲେ ସେହି ବୃକ୍ଷରେ ଗୋଟିଏ ଶୁକଦମ୍ପତୀ ବାସ କରୁଥିଲେ । ସେମାନଙ୍କର ଯୋଡ଼ିଏ ଶାବକ ମଧ୍ୟ ବୃକ୍ଷ କୋଟରରେ ରହିଥିଲେ । ଶୁକ ଦମ୍ପତୀ ସମସ୍ତ ଦିନଟି ଆହାରାନ୍ୱେଷଣରେ କ୍ଲାନ୍ତ ହୋଇ ବୃକ୍ଷକୁ ଫେରିଆସି ଦେଖିଲେ ସେମାନଙ୍କର ବାସମୂଳରେ ଏହି ଶୋଚନୀୟ ଦୃଶ୍ୟ—ଅତି ଦୁଃଖରେ ଯୋଡ଼ିଏ ପ୍ରାଣୀ ମରଣୋନ୍ମୁଖ । ଏହା ଦେଖି ସେମାନଙ୍କର ଚିତ୍ତ ଅସ୍ଥିର ହେଲା । ଭୃତ୍ୟର ଦାରୁଣ ଆର୍ତ୍ତନାଦରେ ସେମାନେ ଅତ୍ୟନ୍ତ ବ୍ୟଥିତ ହେଲେ । ସେତେବେଳେ ଶୁକ ପକ୍ଷୀ ତାହାର ସହଧର୍ମିଣୀ ସାରିକୁ କହିଲା, "ଦେଖ ଧର୍ମ ହିଁ ଏହି । ବିପନ୍ନ ଅନାହାରୀ ଦୁଇଜଣ ଅତିଥି ଆମ୍ଭମାନଙ୍କ ସମ୍ମୁଖରେ ଆଜି ଉପସ୍ଥିତ ହୋଇଅଛନ୍ତି । ଅତିଥି

ବିମୁଖ ହେଲେ ଏ ଜନ୍ମରେ ତ ପକ୍ଷୀ ହୋଇଅଛୁ ଆର ଜନ୍ମରେ ଯେ କ'ଣ ହେବ ତାହା କିଏ କହିବ ? ହୁଏତ ନରକର କୀଟ, ନହେବା ତଦପେକ୍ଷା ହୀନାବସ୍ଥା ହୋଇପାରେ । ମୋତେ ବାଧା ଦିଅ ନାହିଁ । ମୁଁ ତଳରେ ଜଳୁଥିବା ନିଆଁରେ ପଡ଼ିଯାଇ ସେମାନଙ୍କର ଆହାର ସ୍ୱରୂପ ହୋଇ ନିଜର ଧର୍ମ ଏହିପରି ପାଳନ କରିଯାଏଁ । ଏହି ପ୍ରଶସ୍ତ ସମୟ ।" ସାରିର ମଧ୍ୟ ଏ ଦୃଶ୍ୟରେ ପ୍ରାଣ କାନ୍ଦି ଉଠିଲା । ସେ ତତ୍‌କ୍ଷଣାତ୍ କହି ଉଠିଲା, "ତେବେ ମୋତେ ମଧ୍ୟ ଅନୁମତି ଦିଅ—ମୁଁ କାହିଁକି ଧର୍ମରେ ପତିତା ହୋଇ ରହିବି ? ଇହଜନ୍ମର ସମସ୍ତ ସୁଖ ଏକପ୍ରକାର ଭୋଗ କରିଅଛୁ, ବର୍ତ୍ତମାନ ପରଜନ୍ମରେ ମୋହର ଯେପରି ନିସ୍ତାର ହୁଏ, ତାହାର ବ୍ୟବସ୍ଥା କର । ମୁଁ ମଧ୍ୟ ତୁମ୍ଭ ସହିତ ଅଗ୍ନିରେ ଝାସ ଦେବି ।" ଏ କଥାରେ ପରିତୁଷ୍ଟ ହୋଇ ଶୁକ ଉତ୍ତର ଦେଲା, "ମୁଁ ତୁମ୍ଭଭଳି ସ୍ତ୍ରୀ ପାଇ ଧନ୍ୟ ହୋଇଅଛୁ । ଆଉ ବିଳମ୍ବ ନ କରି ସେମାନଙ୍କର ପ୍ରାଣ ବଞ୍ଚାଇବାକୁ ହେବ । ଆଜି ଯେବେ ସେମାନଙ୍କର ଜୀବନ ବଞ୍ଚାଇ ପାରିବୁଁ ତେବେ ଆମ୍ଭମାନଙ୍କର ଜନ୍ମ ଓ ଜୀବନ ସାର୍ଥକ ହେବ ସିନା ?"

ଏହା କହୁଁ କହୁଁ ଶୁକ ସାରି—ପତି ପତ୍ନୀ ଉଭୟହିଁ ସେତେବେଳେ କୋଟରରେ ଯେ ଦୁଇଟି ଶିଶୁ ଥିଲେ ସେମାନଙ୍କୁ କହିଲେ, "ତୁମ୍ଭେମାନେ ବର୍ତ୍ତମାନ ନିଜର ଜୀବନ ଧାରଣରେ ସମର୍ଥ ହୋଇଅଛ, ନିଜ ନିଜର କାର୍ଯ୍ୟ କରି ନିଅ । ଆଉଥରେ ଦେଖ କିପରି ଧର୍ମ ପାଳନ କରିବାକୁ ହୁଏ ।" ଏହା କହି ସେମାନଙ୍କର ବଦନ ଚୁମ୍ବନ କରି ଆଶୀର୍ବାଦ କରୁଁ କରୁଁ ବୃକ୍ଷର ଗୋଟିଏ ଶାଖା ଉପରକୁ ଆସି ଯେଉଁ ଶାଖାର ଠିକ ନିମ୍ନରେ ବସି ରାଜପୁତ୍ର ତାହାଙ୍କର ଭୃତ୍ୟ ନିଆଁ ପୁହାଉଥିଲେ ସେଠାରେ ପହଞ୍ଚି ସେହି ନିଆଁରେ ଝାମ୍ପି ପଡ଼ିଗଲେ । ପ୍ରଭୁ ଏବଂ ଭୃତ୍ୟ ସମ୍ମୁଖରେ—

ଯେଉଁ ସ୍ଥାନରେ ଅଗ୍ନି ଜଳୁଥିଲା, ସେହି ସ୍ଥାନରେ ନୀରବରେ ସେମାନଙ୍କର ଜୀବନ୍ତ ଦେହ ପତିତ ହେଲା । ସଙ୍ଗେ ସଙ୍ଗେ କିଏ ଯେପରି ସେହି ପ୍ରଭୁ ଭୃତ୍ୟର କାନ ପାଖରେ କହିଗଲା—"ତୁମ୍ଭେ-ମାନେ ଏହା ଆହାର କରି ଜୀବନ ବଞ୍ଚାଅ ।"

କି ଅଭାବନୀୟ ଦୃଶ୍ୟ ! ଜୀବନ୍ତ ପକ୍ଷୀଦ୍ୱୟ ଏହିପରି ପୋଡ଼ିମରି ଅନାହାରୀ ଅତିଥି ଦ୍ୱୟଙ୍କର ଆହାର ହେଲେ । ସଂସାର ଧର୍ମ ପ୍ରତିପାଳନର କି କଠୋର ଶିକ୍ଷା ! କି ଅଭାବନୀୟ ଅତିଥି-ସତ୍କାର !

ରାଜପୁତ୍ର ଏବଂ ତାହାଙ୍କ ଭୃତ୍ୟ ସେତେବେଳେ ଚମକି ଉଠି ହଠାତ୍ ଏହିପରି ଆହାର ପ୍ରାପ୍ତ ହୋଇ ଜଗଦୀଶ୍ୱରଙ୍କର ସ୍ତୁତିଗାନ କଲେ ।

ଏରୂପହିଁ ସଂସାରର ଧର୍ମ । କେବଳ ବସ୍ତ୍ରାଚ୍ଛାଦିତ ହୋଇ ସନ୍ନ୍ୟାସୀ ହେଲେ ଚଳିବ ନାହିଁ । ଏ ସଂସାରରେ ରହି, ବୁଝି ଓ କରି ଜାଣିଲେ ଅନେକ କାର୍ଯ୍ୟ କରିଯାଇ ପାରିବ ।

---

ମୁଦ୍ରାକର—ଶ୍ରୀ ଅଜୟକୁମାର ଘୋଷ, ଶ୍ରୀ ହରନାଥ ପ୍ରେସ, କଟକ-୨